# ଆକାଶ କାହିଁକି ନୀଳ
# ସୂର୍ଯ୍ୟ କାହିଁକି ଲାଲ

ନରସିଂହ ମିଶ୍ର



# ଆକାଶ କାହିଁକି ନୀଳ
# ସୂର୍ଯ୍ୟ କାହିଁକି ଲାଲ

ଲେଖକ :
ଶ୍ରୀ ନରସିଂହ ମିଶ୍ର

ପ୍ରକାଶକ :
ଆନନ୍ଦ ପ୍ରକାଶନ
ମିଶନ୍ ରୋଡ଼, କଟକ-୧

# ଏ ବହିରେ ଏହି ବିଷୟ ସବୁ ଅଛି

।

ପିଲାଙ୍କ ମନରେ ପ୍ରତି ମୁହୂର୍ତ୍ତରେ ଅସରନ୍ତି ପ୍ରଶ୍ନ
ଉଙ୍କିମାରେ । ଠିକ୍ ସମୁଦ୍ରର ଅଗଣିତ ଲହଡ଼ି ପରି ।
ସେ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାକୁ ବଡ଼ ମଣିଷ
ମାନେ ମଧ୍ୟ ହିଡ଼ି ବଡ଼େଇ ଯାଆନ୍ତି । ସବୁ
ପ୍ରଶ୍ନର ଉତ୍ତର ଖୋଜି ମିଳେନା । ଏ
ଛୋଟିଆ ବହିଟିରେ ସେହିପରି ପିଲାଙ୍କ
କେତୋଟି ପ୍ରଶ୍ନର ମିଠାଳିଆ ଉତ୍ତର
ଗପ ଛଳରେ ଦିଆ ଯାଇଛି ।
ଅନେକ ଅଜଣା କଥାର
ଉତ୍ତର ଏଥିରେ ଅଛି ।



# ଡାହାଣୀ ଆଲୁଅ

ବଠଲର ସେଦନ ଯିଦ୍ । ସେ ନୂଆ ଗପ ଶୁଣିବ । ଜେଜେବାପାଙ୍କୁ ହର ହଇରାଣ କଲଣି । ତା ସାଥିରେ ଆସି ମିଶିଗଲେଣି ଲପି, ଲଶା, ଦଲୁ, ମିଲୁ, ଆଉ ରେମାନୀ । ପରୀରାଇଜର ଗପ ଶୁଣି ଶୁଣି ଚଟା ଲଗିଲଣି । ଏଥର ନୂଆ ଗପ ଶୁଣିବେ ।

ଲପି କହଲ, "ଜେଜେବାପା ! କାଲ ରାତରେ ଆମର ରାମୁଲୁ କାହିଁକି ଏତେ ଜୋରରେ ଚଲେଇଲ ?

ବଠୂ କହଲ, ସେପରା ସେ ଡାହାଣୀ ଆଲୁଅ ଦେଖି ଚମକ ପଡ଼ଲା । ଲପିନାନୀ, ତୁ ଜାଣିଚୁନା ! କାଲ ଡାହାଣୀ ଆଲୁଅ ଆମ ବାଡ଼ିତଳକୁ ବୋଲ ଆସିଥିଲ । ମୁଁ ଦେଖିଲେ, ବନ୍ଧୁକରେ ଠୋ କର ଦେଇଥାନ୍ତ । ଏକା ଥରକେ ସେ ମାରଥାନ୍ତା ଚତ୍‌ପଟଙ୍ଗ୍ । ରାମୁଲୁଟା ହର ଡରକୁଳା । ସେଇଟାବ ନାକ କାନ୍ଦୁରା ।

ଲସା କହଲ, "ହଁ , ମୁଁ ବ ଦେଖିଛ । ଡାହାଣୀ ଆଲୁଅଟା ଆସି ଆମ ପିଜୁଳ ଖାଇଲ । ତାପରେ ନାଚ ନାଚ ଗଲ । ତୁ ଜାଣିଚୁନା ରେମାନୀ, ତା ହାବୁଡ଼େ ପଡ଼ି ଗଲେ ସେ ପେଟଭିତରେ ପଶିଯାଇ କୋଶ ପକାଇବ । ମଣିଷ ରକତ ବାଲୁକର ମରଯିବ ।

ଲିପି କହିଲା, "ବିଲୁକୁଲୁ ନୁହେଁ । ଆମ ଦିଦି କହୁଥିଲେ ସେଇଟା ଡାହାଣୀ ନୁହେଁ ବୋଲି । କଅଣ କେମିତ ନିଆଁ ଟାଏ । ଆଚ୍ଛା ଜେଜେବାପା, ତମେ କହିଲ, ସେଇଟା କ'ଣ ?

ଜେଜେବାପା ଗଳା ସଫାକରି କହିବା ଆରମ୍ଭ କଲେ ।

ବୁଝିଲି ପିଲାଏ ! ତମେସବୁ ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ ନାଁ ଶୁଣିଲେ ଡରୁଚ ନୁହେଁ ?

ବଠଲ କହିଲା, ଆଉ... ତମେ ଡରୁନ ।

"ନା ମୁଁ ଡରେନା । ମୁଁ ଜାଣିଛି, ସେଇଟା ଗୋଟାଏ ଆଲୁଅ । ଚିରଗୁଣୀ ଆଲୁଅ କହି ମିଛଟାରେ ଆମେ ଡରୁଚୁ । ଚିରଗୁଣୀ ବୋଲି କିଛି ନାହିଁ । ଡରେଇବା ପାଇଁ ଏମିତ ନାଁଟିଏ ଦିଆଯାଇଛି । ସେ ନାଁଟା ସାଥିରେ ମଣିଷର ଭୟଟା ମିଶି ରହିଛି । ହେଲେ ଡରିବାର କିଛି ନାହିଁ ।

କେମିତ ? କହନ୍ତୁ । ପଚାରିଲା ରେମାନୀ ।

ମୁଁ ପରା ସେଇକଥା କହୁଚି । ଜୀବଜନ୍ତୁ ମରିଗଲେ ତାକୁ ପୋପାଡ଼ି ଦିଆଯାଏ । ତାଙ୍କ ଦେହ ପଚିଯାଏ । ଆଉ କେତେକ ଗଛଲତା ସବୁ ପଚି ସଢ଼ିଯାଏ । ଏହି ପଚାସଢା ଜିନିଷରୁ ଗୋଟାଏ ଗ୍ୟାସ ବାହାରେ । ସେଇ ଗ୍ୟାସ ସ୍ୱତରେ ଜଳିଉଠେ । କାଲି ରାମୁଲୁ ଏଇ ଆଲୁଅ ମଶାଣି ପାଖରେ ଦେଖିଥିଲା ମଶାଣି, କବର

ଜାଗା, ସନ୍ତ ସନ୍ତଆ ଜାଗାରେ ଏଇ ଗ୍ୟାସ ଥାଏ । ଏହା ମାଟି ପାଖରୁ ଟିକିଏ ଛାଡ଼ ଉପରେ ଭସୁଥାଏ । ରାତରେ ପବନରେ ଏହା ଏଣେତେଣେ ଖେଳଯାଏ ।

ହଁ ହେଇଥିବ । ମଶାଣିରେ ମଲ ଜୀବସବୁ ପଡ଼ୁଛନ୍ତ । ତାଙ୍କ ଦେହରୁ ସେ ଗ୍ୟାସଟା ବାହାରୁଥିବ । କହଲ ଲପି ।



ମିଠଲ ପଚରଲ, "ଜେଜେବାପା ! ସେଇଟା ଜଳେ ପୁଣି ଲଭିଯାଏ । ତାହାଣୀ କଣ ଲୁଚ କର ବସିଥାଏ ଓ ବତୀ ଲଭିଗଲେ ପୁଣି ଜାଳ ଦଏ ।"

ସମସ୍ତେ ଏକ ସଙ୍ଗତ ହସି ଉଠିଲେ ।

ଜେଜେବାପା କହିଲେ, "ନା ଡାହାଣୀ ଶରଗୁଣି ବୋଲି କିଛି ନାହିଁ । ବିଲୁଆମାନେ ଶବ ଖାଆନ୍ତି । ସଢ଼ା ପଚା ମାଂସ ଖାଆନ୍ତି । ତାଙ୍କ ପାଟିରେ ସେଇ ଗ୍ୟାସ ଥାଏ । ସେମାନେ ଆଁ କଲେ ପବନରେ ତାହା ବାହାରି ଆସି ଜଳି ଉଠେ । ପାଟି ବନ୍ଦ କଲେ ଆଉ ଜଳେନି ।



ବିଲୁଆ ଦଉଡ଼ୁଥିବା ବେଳେ ରାତିରେ ନିଆଁଟା ଦଉଡ଼ିବାର ଜଣାଯାଏ । ଲୋକେ କହନ୍ତି ଡାହାଣୀ ଦଉଡ଼ୁଛି ।

ଖାଲି ତା ନୁହେଁ ସନ୍ତସନ୍ତିଆ ଜାଗା, ମଶାଣି ଅଞ୍ଚଳରେ ଏ ବାଷ୍ପଟା ଥାଏ । ପବନରେ କେତେବେଳେ ଜଳିଉଠେ । କେତେବେଳେ ନାହିଁ ।

ଆଚ୍ଛା ଜେଜେବାପା । `

ସେଇଟା ଯଦି ଗୋଟାଏ ନିଆଁ ତାହେଲେ ଘର ଦ୍ୱାର ପୋଡ଼ିପକାନ୍ତା । ପବନରେ ଉଡ଼ି ଆସିଲେ ଗାଁ ପୋଡ଼ି ଯାଆନ୍ତା ।" ପଚାରିଲା ଲିମା ।

"ହିଁ, ବଢିଆ ପ୍ରଶ୍ନଟିଏ ଏଥର ପଚାରିଲି । ସେଇଟା ଗୋଟାଏ ନିଆଁ ନୁହେଁ । ଆଲୁଅଟା ଦେଖାଗଲେ ଆମେ କହୁ ନିଆଁ ଜଳିଲି ବୋଲି । ସବୁ ଆଲୁଅ ନିଆଁ ନୁହେଁ । ତମେ ଜୁଳୁଜୁଳିଆ ପୋକ ଦେଖିଥିବ । ତା ଦିଦିରୁ ଆଲୁଅ ବାହାରେ । ସେ କଣ ଜଳୁଚି । ବିଲୁଆ ପାଟିରୁ ସିମିତ ଆଲୁଅଟା ବାହାରେ । ସେ ଗ୍ୟାସଟା ଆଲୁଅ ଦିଏ । ଆମେ ସେ ଆଲୁଅଟାକୁ ଦେଖୁ ।"

ପିଲାଏ ଏଥର ସମସ୍ତେ ବୁଝିଲେ । ଏକସ୍ୱରରେ କହିଲେ ବଡ଼ ଆଗପ । ଆମେ ଆଉ ଡାହାଣୀ ଆଲୁଅକୁ ଡରିବୁନି । ଦିଲ୍ଲୁ ତାଳି ମାରି ମାରି ନାଚିଲା ।



# ଘର କହେ କାହାଣୀ

ଜେଜେବାପାଙ୍କ ପାଖକୁ ଲସା ଆଉ ଲପି ଆସି-ଗଲେଣି । ବଲୁ ଆଉ ବଠଲ ଘର ଭିତରେ ମାଡ଼-ଗୋଳରେ ଲଗିଛନ୍ତି । ବଲୁ କାନ୍ଦି ପକାଇ ଦେଲା । ବଠଲ ମାନକର ମୁହଁ ଶୁଖେଇ ବସିଛି । ଯେତେ ଡାକିଲେ ବ ଶୁଣୁନ । ମିଠଲ କୁମ୍ଭକର୍ଣ୍ଣ ପଣ ବୀର ଗ୍ରହାଣୀରେ ମାଡ ଆସୁଚ ଜେଜେବାପାଙ୍କ ପାଖକୁ । ଆଜି ଗୋଟାଏ ନୂଆ ଗପ ଶୁଣିବେ ।

ବଠଲ ଟିକିଏ ଟିକିଏ କଥାରେ ମାନ କରେ ବୋଲ ଜେଜେମା ତାକୁ ନା ଦେଇଛନ୍ତି ମାନଗୋବନ୍ଦ । ଜେଜ ଡାକିଲେ "ମାନଗୋବନ୍ଦ" ଏଥର ମାନ ଭାଙ୍ଗ । ଆସ ଆଜି ଗୋଟାଏ ନୂଆଗପ କହବ । ଘର କହେ କାହାଣୀ । ଘର ତା ନଜ କାହାଣୀ କହବ ।"

ବଠଲ ବେଶୀ ସମୟ ଅଭିମାନରେ ବସି ପାରଲାନ । ମୁହଁ ଫଣ ଫଣ କର ଆସି ପହଞ୍ଚିଗଲା । କହଲା, "ବଲୁ କାହିଁକି କନ୍ଦି ପକାଇଲା କି ?

ବଲୁ ସାଥି ସାଥି କନ୍ଦି ଫିଟାଇ ଦେଲା । ବଠଲ ମୁହଁରେ ହସ ଖେଳଗଲା । ସେ କହଲା, "ଜେଜେବାପା,

ଘରଟା କଣ କଥା କହେ ? ସେ କଣ ମଣିଷ ହୋଇଛି ? ତମେ ଆମକୁ ଏମିତ ଠକୁଚ···ନା ?

ଜେଜେବାପା କହିଲେ, "ଏ ସଂସାରରେ ସମସ୍ତେ କଥା କହନ୍ତି । କିଏ ପାଟି କରି କହେ, କିଏ ତୁନି ତୁନି



କହେ, କିଏ ଖାଲି ଶବ୍ଦକରେ, ଆଉ କିଏ ନୀରବରେ କହେ । ସବୁରି ଭାଷା ସମସ୍ତେ ବୁଝି ପାରନ୍ତିନି ।

ଆଉ ତମେ ଘରର ଭାଷା ବୁଝିଲ ? ପଚାରିଲା ମିଠଲ । ହଁ ମୁଁ ବୁଝିଲି ।

"ଲିସା ପଚାରିଲା । ଘର କି କାହାଣୀ କହିଲା ? ଆମକୁ କୁହ ।

ଜେଜେବାପା କଥା ଆରମ୍ଭ କଲେ ।

"ଥରେ କଣ ହେଲାନା, ଗୋଟାଏ ତିନିମହଲା ଘର ଥିଲା । ତା ପାଖରେ ଲୋକଟିଏ ଝାଟିମାଟିର କୁଡ଼ିଆ କରି ରହୁଥିଲା । ଦିନେ ସେ ଦୁହିଙ୍କ ଭିତରେ କଳି ହେଲା । କୋଠାଘର କହୁଥାଏ, "ମୁଁ ବଡ଼, ଦେଖ୍ କେଡ଼େବଡ଼ିଆ ।

ମୁଁ କେତେ ଅଳଙ୍କାର ପିନ୍ଧିଛି । କମିତ ସଜ୍ଜା ଯାଇଛି । ତୁଟା କେଡ଼େ ହୀନ ମାନ । ମାଟି କାଦୁଅରେ ତଆର । ପାଣି ଟୋପେ ପଡ଼ଲେ ଝଡ଼ ପଡ଼ବୁ । ଯାତଇନ୍ଦ୍ର ବରଷିଲେ ବ ମୋର କଛି ହେବନ ।

କୁଡ଼ଆ ଘର 'କହ୍ଲା, "ତୁ କଣ ବଡ ପଣିଆ ଦେଖେଉଚୁ ମ । ଦରକାର ଅନୁସାରେ ମଣିଷ ତା ଘର କରେ । ତୋ ମାଲକ ତା ଦରକାରକୁ ନେଇ ଗଢ଼ିଚ । ମୋ ମାଲକ ମୋତେ ତା ଦରକାର ଅନୁସାରେ ଗଢ଼ିଚ । ତୁ କୋଠା ଘର ମୁଁ ମାଟି କୁଡଆ । ତୁ ମୋ-ଠାରୁ ଜନମ । ମୁଁ ତୋର ମା ତୁ ମୋର ଝିଅ !

କୋଠାଘର ପଚାରଲା, କେମିତ ?

"ଆଚ୍ଛା ଶୁଣ ! ମଣିଷର ଆଗେ ଘର ଫର କଛି ନଥିଲା । ଯୋଉଠି ପାରଲା ସେଇଠି ରହୁଥିଲା । ଗଛ ମୂଳ, ପଥର ଖୋଲ, ଗଛ ଉପର ତାର ରହବା ଜାଗା । ଏଇ ପଶୁ ପକ୍ଷୀଙ୍କ ପର ସେ ଖରା ବରଷା କାକର ସହେ । ସେଥିକୁ ତାର ଖାତର ନଥାଏ । ତା ଦେହ ବ ଖରାପ ହୁଏନ ।

ବଠଲ ପଚାରଲା, 'ଆଉ ତା ଜିନଷ ପତ୍ର କୋଉଠେ ରଖେ ?" ଜେଜେ କହଲେ, "ଶୁଣ, ଘର କଣ କହୁଚ ।

ଆଗେ ମଣିଷ ଲଙ୍ଗଳା ହୋଇ ବୁଲୁଥିଲା । ତାପରେ ଗଛର ବକଳା ଅଣ୍ଟାରେ ଗୋଡ଼ାଇଲା । ତାର ଜିନଷ ପତ୍ର କଛି ନଥାଏ । ମୁନଆ ପଥର, ବାଡ଼ ତାର ଜିନଷ ।

ତଳେ ପଡ଼ିଥାଏ । କିଏ ବା ନେଉଛି ମଣିଷ ସବୁ ଦଳ ଦଳ ହୋଇ ବଣରେ ରହନ୍ତି । ଗୋଟିଏ ଦଳ ଆଉ ଗୋଟିଏ ଦଳକୁ ଭେଟିଲେ ତାଙ୍କ ଭିତରେ ଯୁଦ୍ଧ ହୁଏ । ଦ ପାଖରୁ ବହୁତ ମଣିଷ ମରନ୍ତି । ତା ପରେ ବାଘ ଆସି ସେମାନଙ୍କୁ ଖାଇଯାଏ । ସିଂହ ଖାଇଯାଏ । ହାତୀ ଦଳ ଚକଟି ଦଏ । ଭଲ୍ଲୁ ରାମ୍ପି ଏକାଏ ।

ସେମାନଙ୍କ ଦାଉରୁ ରକ୍ଷା ପାଇବା ପାଇଁ, ସେ ପଥର ଖୋଲରେ ଆସି ରହିଲା । ପଥର କାଟି ଗୁମ୍ଫା ତିଆରି କଲା । ସେଇଟା ହେଲା ତାର ଘର । ବିପଦରୁ ରକ୍ଷା ମିଳିଗଲା । ଗଛ ଉପରେ ମଞ୍ଚା କରି ରହିଲା । ପଶୁଙ୍କ ଉପଦ୍ରବ ଟିକିଏ କମିଗଲା । ପାଣି ଜାଗା ମାନଙ୍କରେ ଖୁଣ୍ଟ ଉପରେ ମଞ୍ଚା ଗଢ଼ିଲା । ଚାରି ପାଖରେ ତାର ପାଣି । ମଝିରେ ତାର ମଞ୍ଚା ବିପଦରୁ ରକ୍ଷା ମିଳିଲା ତାକୁ । ସେ ଖରା ବରଷାରୁ ରକ୍ଷା ପାଇବାକୁ ଘର କରି ନଥିଲା । ଅସଲ କଥା ହେଲା ବିପଦ ଆପଦରୁ ରକ୍ଷା ପାଇବା ।

କୋଠା ଘର କହିଲା ମୁଁ କିମିତ ତୋର ଝିଅ ?

ସେଇ କଥାତ କହୁଚି । ମଣିଷ ତାପରେ ମାଟିକୁ କାଦୁଅ କରି ସେଥିରେ ଘର ଗଢ଼ିଲା । ମାଟି ଘର । ଠିକ୍ ମୋରି ପରି । କାଠ ଗଣ୍ଡି ପୋତି ତା ଉପରେ ମାଟି ଲେପି ଘର କଲା । ତା ପରେ କାଦୁଅକୁ ଇଟା ପରି କରି ଶୁଖାଇଲା ଖରାରେ । ତାକୁ ଯୋଡ଼ି କାନ୍ଥ ଗଢ଼ିଲା । ତା'ଉପରେ ଛଣ ଛପର କଲା । ଗଛର ଲଇ, ମଲା ଜୀବର ତନ୍ତୁରେ ବନ୍ଧାବନ୍ଧି କଲା ।

ମଣିଷ ଆସ୍ତେ ସଭ୍ୟ ହେଲା । ଲୁଗା ପଟା ପିନ୍ଧିଲା । କଥା କଥା ଶିଖିଲା । ମାଂସ, ଫଳ ମୂଳ ରାନ୍ଧି ଶିଖିଲା ।

ଗୃଷ ବାସ କର ଜାଣିଲା । ଆମର ରୂପ ଆସ୍ତେ ଆସ୍ତେ ବଦଳିଲା । ତା ସାଥିରେ ଯିଏ ଥିଲେ ସମସ୍ତଙ୍କୁ ବଦଳାଇଲା । ଆମେ ଘର ମାନେ ବି ବଦଳି ଗଲୁ । ତୁ ଆଗେ ମୋର ପର ଥିଲୁ । ମୋର ଭିତରୁ ତୁ ଜନମ ହୋଇ ଏଡ଼େ ବଡ଼ ହୋଇଚୁ । ତା ମନ ବୁଝିଲା । କଳି ବନ୍ଦ ହେଲା ।



ଲପା କହିଲା ଲପି । ମଣିଷ ଆଗେ ପୋଉ ଇଟା ଗଢ଼ୁଥିଲା, ଖରାରେ ଶୁଖାଉଥିଲା । ଏବେ ତାହା ପୋଡ଼ ଛନ୍ତି । ଆମ ଏ ଘରଟା ପୋଡ଼ା ଇଟାରେ ଗଢ଼ା ହୋଇଛି । ଏଇ ଦେଖୁନୁ ସାମନା ଘରଟା ପୋଡ଼ା ଇଟାରେ ଗଢ଼ା ହୋଇଛି । ସେଇ ପୋଉ ଘନ

ମହଲା କୋଠାଘର, ସେ ମଧ୍ୟ ସେଇ ପୋଡ଼ାଇଟାରେ ତିଆରି ।



ଲିପି କହିଲା, "ଆମ ଗାଁ ଘର ସବୁ ମାଟିରେ ତିଆରି । ବଣ ଜଙ୍ଗଲରେ ଲୋକେ ସେଇ ପୁରୁଣା କାଳଆ ମାଟି ପଥର ଘରେ ରହୁଚନ୍ତି । ପଥର ଖୋଲରେ ବି ରହୁଚନ୍ତି ।

ଜେଜେ କହିଲେ ଇଜିପଟ ଦେଶର ଇମିତି ମାଟି ପଥର ଘର ଅଛି ଯାହା ହଜାର ହଜାର ବର୍ଷ ହେଲା ରହିଛି । ଗ୍ରୀସ ବୋଲି ଗୋଟିଏ ଦେଶ । ସେ ଦେଶର ଲୋକେ ମଣିଷଙ୍କୁ ନୂଆ ଢଙ୍ଗର ବଢ଼ିଆ ବଢ଼ିଆ ଘର ତିଆରି ଶିଖାଇଲେ । ସେ ଘର ଭାରି ସୁନ୍ଦର । ତା କାନ୍ଥରେ ଚିତ୍ରଉଁ ଶବ୍ଦ ସେତେବେଳେ ସବୁ ହୋଇଥିଲା, ତାହା

ଦେଖିଲେ ମନ ଛାଡ଼ିବନି । ରୋମ ଦେଶର ଲୋକ ଗ୍ରୀସ୍ ଦେଶର ଲୋକଙ୍କଠାରୁ ଘର ତିଆରି ଶିଖିଥିଲେ ।

ଗରିବ ଲୋକେ ତାଙ୍କର ପୁରୁଣା କାଳିଆ ଘରକୁ ଏବେ ବି ରଖିଛନ୍ତି । ଧନୀ ଲୋକମାନେ ଦିନକୁ ଦିନ ଘରର ରୂପ ବଦଳାଉଛନ୍ତି । ତାକୁ ଆଉରି ସୁନ୍ଦର କରୁଛନ୍ତି । ମଜଭୁତ ଓ ଅଳ୍ପ ଖର୍ଚ୍ଚରେ ଘର ତିଆରି ପାଇଁ ବୈଜ୍ଞାନିକମାନେ ନୂଆ ଜିନିଷ ବାହାର କଲେଣି । ଯାହା ହେଲେ ବି ମଣିଷ ତାର ଝାଟି ମାଟିର କୁଡ଼ିଆକୁ ଛାଡ଼ି ପାରିବନି ।

ଜେଜେ ପଚାରିଲେ ଗପଟା କେମିତି ଲାଗିଲା ? ଲିସା ଲିପି କହିଲେ ବଢ଼ିଆ ଲାଗିଲା । ବଠଲ୍ ମେଠଲ କହିଲେ, ଆମକୁ ଭଲ ଲାଗିଲାନି । ମାଙ୍କଡ଼, ଭାଲୁ, ହରିଣ, ବାଘ, ହାତୀ କଥା କହିଲନି ।





# କର୍ପୂର ଯାଉଛି ଉଡ଼ି

ଜେଜେମା ତାଙ୍କ ପେଟରା ସାଉଟୁ ଥାଆନ୍ତି । ତାଙ୍କର ସେଇ ପୁରୁଣା କାଳିଆ ପେଡ଼ି ପେଟରା । ତାକୁ ଖୋଲି ଦେଲେ ପିଲାଙ୍କର ମେଳା । ଲିପି ବଠୁ ଚଲେଇ ଉଠିଲେ, "ଆସରେ ପିଲେ ଜେଜିମାଙ୍କ ପେଡ଼ି ଭଣ୍ଡାଳିବା । ଜେଜିମା ତାଙ୍କର ପାକୁଆ ପାଟିରେ ହସ ମାଖି ଦେଲେ । କହିଲେ, ହଉ ! ହଉ ! ଦେଖ ··ଦେଖ । ପୁରୁଣା କାଳିଆ ଜିନିଷ ତମ ଆଖିରେ ପଡ଼ୁନି । ଆମ ବେଳକୁ ଆଜିକାଲି ପରି ଏଡ଼େ ସୁନ୍ଦର ବାକ୍ସ ନ ଥିଲା । ଏଇ ବେତ ବୁଣା ପେଡ଼ି । ବାଉଁଶ ପାତରେ ତିଆରି ପେଡ଼ି ପେଟରା । ଅତି ବେଶି ହେଲେ କାଠ ସିନ୍ଧୁକ ।

ଜେଜେମା ପେଡ଼ି ଭିତରର ଜିନିଷ ଖେଳାଉ ଥାଆନ୍ତି । ପିଲାଏ କହିଲେ ଏଁ···ଭିତରଟା କଣ ଚହ୍ଲ ଚହ୍ଲ

ମହ ମହ ହୋଇ ବାସି ଯାଉଚ । କଣ ଅତର ପକେଇଚ କି ।

ବୁଢ଼ୀ ଚଗ୍ ଧୋବ କନା ଖଣ୍ଡେ ବାହାର କର ପିଲାଙ୍କୁ ସୁଙ୍ଘାଇ ଦେଲେ । କହଲେ, "ଆହା ! କର୍ପୂର ଉଡ଼ି ଯାଇଚ । କନା ଖଣ୍ଡକ ପଡ଼ଚ । ଲପି ପଚ୍ଚରଲା, "ଜେଜିମା ! କର୍ପୂର କାହିଁରେ ତଆର ।

ମୁଁ ସେଗୁଡ଼ାକ କହ ପାରବନ । ଆମେତ ବଜାରରୁ କିଣି ଆଣୁଚେ । ତୁ ଜେଜେ ବାପାଙ୍କୁ ପଚ୍ଚରେ ସେ କହ ଦେବେ ।

"ତାଙ୍କୁ କଣ ସବୁ କଥା ଜଣା ?"

"ପଚ୍ଚର ଦେଖ୍, ସେ କହ ପାରୁଚନ୍ତ ନା ନାହିଁ ।"

ଲପି ଜେଜେ ବାପାଙ୍କୁ ପଚ୍ଚରଲା । ଜେଜେ ବାପା କହଲେ, "କର୍ପୂର ଗଛରୁ ମିଳେ । ଲପି ତାର ଆଖି ଦୁଇଟା ଡମା ଡମା କର ଦେଇ କହଲା, "କର୍ପୂର ଗଛ ଅଛି ?

"ହଁ । କର୍ପୂର ଗଛ ଅଛି । ତୁ ଜାଣିଚ···ଭରତକୁ ଲାଗି ଚନ୍ ଦେଶ, ଜାପାନ ଦେଶ କଥା ମଧ୍ୟ ଜାଣିଛୁ । ଏଇ ଚନ୍, ଜାପାନ, ଆମେରକା ଆଉ ଫର୍ମୋଜା ବୋଲ ଆଉ ଏକ ଦେଶରେ କର୍ପୂର ଗଛର ବଣ ରହଛି । ତାକୁ କର୍ପୂର ଅରଣ୍ୟ କୁହାଯାଏ । କୋଉ ପୁରୁଣା କାଳରୁ ଏ ଅରଣ୍ୟ ସବୁ ଅଛି ।

ଭରତର ଚନ୍ଦନ ବନ ପର ସେ ଦେଶର କର୍ପୂର ବଣ । କର୍ପୂର ଗଛ ଗୁଡ଼କ ସବୁବେଳେ ବାସୁଥାଏ । ତାର ଗଛ, ପତ୍ର, ଫୁଲ, ଫଳ, କାଠ ସବୁ ବାସେ ।

କର୍ପୂର ଗଛ ତରଣ ଫୁଟରୁ ଚାଳିଶ ଫୁଟ ପର୍ଯ୍ୟନ୍ତ ଉଚ । ଚାହିଁଲେ ଆଖି ପାଇବନ । ଲିପି ପୁଣି ଆଖି ଡ଼ିମା ଡ଼ିମା କରି କହିଲା, "ଏଁ···ତରଣ ଚାଳିଶ ଫୁଟ ଉଚ !

"ହିଁ ସତରେ, ତାଠୁ ବି ଆଉରି ଉଚ ଗଛ ଅଛି । ଏ ଗଛର ପତ୍ର ସବୁ ମୋଟା । ଗଛର ଅଗ ସବୁ ମୋଟା ଗଛର ଅଗ ପତ୍ରରେ ଛାଣି ହୋଇ ରହିଥାଏ ।

ଆମେରିକାରେ କର୍ପୂର ବଣ ଅଛି । ରାସ୍ତା କଡ଼ରେ ଏ ଗଛ ସବୁ ଲଗା ଯାଇଛି । ରାସ୍ତାରେ ଗଲାବେଳେ ବାସନା ମହକ ଉଠେ । ଫର୍ମୋଜା ଦ୍ୱୀପରେ ପ୍ରଚୁର କର୍ପୂର ଗଛ ଅଛି । ତେଣୁ ଏହାକୁ କର୍ପୂର ଦ୍ୱୀପ ବୋଲି କୁହାଯାଏ ।

ଅଚ୍ଛା ଜେଜେ ବାପା ! ଏ ସବୁ କର୍ପୂର କିମିତ ତିଆରି ହୁଏ ? "ଜେଜେ ବାପା କହିଲେ, "ଆମେ ଆଜି-କାଲି ଯେଉଁ କର୍ପୂର ବ୍ୟବହାର କରୁଚୁ ସେ ସବୁ ଗଛରୁ ବାହାରି ନାହିଁ । ଏଗୁଡ଼ିକ ନକଲି କର୍ପୂର । ଅସଲି କର୍ପୂର ଗଛରୁ ମିଳେ । କର୍ପୂର ଗଛର କାଠକୁ ଟୁକୁଡ଼ା ଟୁକୁଡ଼ା କରି କଟାଯାଏ । ସେଥିରେ ବାଷ୍ପ ଯୋଗ କରାଯାଏ ।

ଲିପି କହିଲା, ବାଷ୍ପ ମାନେ ଗ୍ୟାସ ତ ।

ହିଁ, ସେଇ ଗ୍ୟାସ ସାଥିରେ କର୍ପୂର ମିଶିଯାଏ । ତାକୁ ପୁଣି ଥଣ୍ଡା କରି ଦିଆଯାଏ । ଥଣ୍ଡା ହେଲେ ଏଥିରୁ ସରୁ ସରୁ ଦାନା ଆକାରରେ କର୍ପୂର ବସିଯାଏ । ଏହା ଛଡ଼ା କର୍ପୂର ତେଲରୁ ମଧ୍ୟ କର୍ପୂର ମିଳେ ।

ଆଜି କାଲ ବଜାରରେ ମିଳୁଥିବା କର୍ପୂର ଅଧିକାଂଶ ନକଲ। ଠିକ୍ କର୍ପୂର ପରି ବାସନା। କାମ ମଧ୍ୟ କରୁଛି ପରିମାଣରେ କର୍ପୂର ପରି । ବୈଜ୍ଞାନିକମାନେ ପରୀକ୍ଷା କରି ଜାଣିଛନ୍ତି । କର୍ପୂର ଭିତରେ ଅଛି ଉଦଜାନ, ଅମ୍ଳଜାନ ଆଉ ଅଙ୍ଗାରକ ।

ବାଟ ମିଳିଯିବା ପରେ ଆଉ ଗଛ ଉପରେ କର୍ପୂର ପାଇଁ ନିର୍ଭର କରିବାକୁ ପଡ଼ୁନି । କର୍ପୂର ଯେମିତି ସୁବାସରେ ଭରିତ ସେମିତି ତାର ଔଷଧ ଗୁଣ ମଧ୍ୟ ଅଛି । ଏହା ବାୟୁକୁ ସଫା କରେ । ଏଥିରୁ ବାସନା ସାବୁନ ମଧ୍ୟ ତିଆରି ହୁଏ । କର୍ପୂର ବାକ୍ସରେ ପକାଇଲେ କୀଟ ସବୁ ମରି ଯାଆନ୍ତି । ଦାମିକା ଲୁଗା ପଟା ବହିପତ୍ର କୀଟ ଦାଉରୁ ରକ୍ଷା ପାଏ । ଜେଜେ ମାଙ୍କ ପେଡ଼ିରେ ତାଙ୍କର ବୋହୂ ବେଳର ରେଶମି ଶାଢ଼ି ଅଛି । ତାକୁ କୀଟ କାଟିବେନି ବୋଲି ସେ କର୍ପୂର କନାରେ ବାନ୍ଧି ରଖିଥିଲେ । କର୍ପୂର ଉଡ଼ିଯାଇଛି···କନାଖଣ୍ଡିକ ପଡ଼ିଛି ।

ଜେଜେ ମା ହସି ଉଠିଲେ । ହସି ଉଠିଲି ଲିପି ।





## ବାଉଁଆ

ସେ ଦନ ପିଲାମାନେ ଖେଳୁଥିଲେ । ମିଠଲ୍ କମଳା ଟାଏ ଛଡ଼ାଇ ସେଥିରୁ ଅଧାନେଇ ଦତ୍ତୁକୁ ଦେଲା । ଦତ୍ତୁ କହଲା, "ମୁଁ ଖାଇବନ । "ନେ ··ମୋ ସାଙ୍ଗଟା ପରା । ନେଏ ।"

"ନା···ମୁଁ ତ ନେବନ କହଲ ।"

ନବୁଝ କଣ କହନ୍ତୁ···ନା···ବୁ···ଝ । ମୁଁ ଦଉଚ, ଭୁଝ ବୁଝ ? କଟିମିଟି କର ଚାହିଁଲ ମିଠଲ ଦତ୍ତୁକୁ । ତାପରେ ଦାନ୍ତ କାମୁଡ଼ି, ତା' ଉପରକୁ ମାଡ଼ିଯାଇ ବାଁ ହାତରେ ଦ ଚାରିବିଧା ଥୋଇଦେଲା । ଭେଁ···ଭେ କର କାନ୍ଦି ଉଠିଲା ଦତ୍ତୁ । ବିଜୟୀ ବୀର ପରି କାନ୍ଥକୁ ଆଉଜି ଛିଡ଼ା ହୋଇ-ଥାଏ ମିଠଲ । ଜେଜେ ବାପା ଦଉଡ଼ି ଆସି ତାକୁ ଟାଣି

ଆଣିଲେ । ଲପି, ବଠ, ଲସା, ସେମାନୀ ସମସ୍ତେ ତାଙ୍କ ଗୃହିଁ ଥାନ୍ତି ।

ତୁ ବାଉଁଆ, ତୋ ବାଁ ହାତଟାକୁ ଏଥର ଦଉଡ଼ରେ ବାନ୍ଧି ଦେବ । ଭୁଟା ବଡ଼ ଦୁଷ୍ଟ । କହଲେ ଜେଜେବାପା । ସେ ମୁହଁଟାକୁ ହାଣ୍ଡି ପର କର ସେମିତ ଛିଡ଼ା ହୋଇ ଥାଏ ।

ଲପି କହଲ, "ଜେଜେବାପା, ବୁଝିଲନା, ସେ ମିଠଲଟା ଏବେ ଭର ଦୁଷ୍ଟ ହୋଇଗଲାଣି । ସମସ୍ତଙ୍କୁ ବାଁ ହାତରେ ବାଡ଼ଉଚ । ଆଚ୍ଛା, ସେ ବାଁ ହାତରେ ସବୁ କାମ କାହିଁକ କରୁଚ । ଡ଼ାହାଣ ହାତରେ କରୁନ କାହିଁକ ? ଆମେ ସବୁ ଡ଼ାହାଣ ହାତରେ କାମଧନ୍ଦା କରୁଚୁ । ଆମର ଡାହାଣ ହାତଟା ଚଞ୍ଚଳ, ତାର ବାଁ ହାତଟା ଚଞ୍ଚଳ । କାରଣ କଣ ।

ସବୁ ପିଲଏ ଖେଳ ଛାଡ଼ ଚାଲ ଆସିଲେ କଥା ଶୁଣିବାକୁ । ସେ ସେମିତ ଛିଡ଼ା ହୋଇଥାଏ ।

ଜେଜେ ବାପା କହଲେ, "ସେଇଟା ବାଉଁଆଟା । ତାର ବାଁ ହାତ ଡାହାଣ ହାତ ଅପେକ୍ଷା ଅଧିକ ଚଞ୍ଚଳ । ଶହେ ଲୋକରେ ପ୍ରାୟ ଚାର ପାଞ୍ଚଜଣ ଇମିତ ଥାଆନ୍ତି । ବାଁ ହାତରେ ସବୁ କରିବାକୁ ଭଲ ପାଆନ୍ତି । ସେମାନଙ୍କୁ ଡେବରିଆ ମଧ୍ୟ କୁହାଯାଏ ।

ହଁ ଯେ, ଇମିତ କାହିଁକ ହୁଏ ? ପଚାରଲା ଲସା ।

ଜେଜେବାପା କହଲେ, ତୋର କାଲ ଜୋତା କିଣା ହୋଇଛି ?

"ହଁ... ।"

ଦୋକାନ କମିତ ଦେଲ ?

ପାଦ ଆଗ ମାପିଲ, ତା ପରେ ସେଇ ମାପର ଜୋତା ଆଣି ପିନ୍ଧାଇଲ । ଆଚ୍ଛା ଦଇଟା ଯାକ ପାଦର ମାପତ କାହିଁ ସମାନ ହେଲାନ । ଗୋଟାଏ ବଡ଼ ଅନ୍ୟଟି ଟିକଏ ସାନ ।

ସମସ୍ତଙ୍କର ପାଦ ଇମିତ ବଡ଼ ସାନ ନା ଏକା ମୋର ।

ନା···ସବୁର ପାଦ ଗୋଟିଏ ପାଦଠାରୁ ଅନ୍ୟ ପାଦଟି ଟିକଏ ସାନ ଥାଏ । ଦ ପାଦ କିନ୍ତୁ ସମାନ କାମ କରନ୍ତି ।

ଏପର କାହିଁକ ହୁଏ ?

ତାର କାରଣ ହେଉଚ, ଆମେ ଦେହଟାର ଗଢ଼ଣରେ ଅସମତା ରହିଛି । ଆମର ବାଁ ଆଉ ଡାହାଣ ପାଖରେ ଟିକଏ ଛୋଟ ବଡ଼ ରହିଛି । ତମେ ଦର୍ପଣ ନେଇ ମୁହଁ ଦେଖୁନ, ଦେଖିବ ଡାହାଣ ପାଖ ମୁହଁ ବାଁ ପାଖ ଅପେକ୍ଷା ଟିକଏ ଫୁଲିଲା ପର ଜଣା ପଡ଼ିବ । ଆମର ପାଟି ଭିତରଟା ସମିତ । ଡ଼ାହାଣ ପାଖ ବେଶି କାମ କରେ । ଡ଼ାହାଣ ଗାଲଟା ବାଁ ଗାଲ ଅପେକ୍ଷା ଟିକଏ ବଡ଼ । ଡ଼ାହାଣ ଆଖି ବାଁ ଆଖି ଅପେକ୍ଷା ଟିକଏ ବଡ଼ ।

ମିଠଲର ରାଗ କୁଆଡ଼େ ଗୁଲିଗଲାଣି । ସେ ଆଗେ ଆଗେ କହିଲା, "ଜେଜେ ବାପା ! ତମେତ ଡ଼ାହାଣ ପାଖକୁ ଏତେ ତାରିଫ୍ କରୁଛ । ଦେଖ ମୋର ବାଁ ହାତଟା ବଡ଼ ।

ସମସ୍ତେ ହସି ଉଠିଲେ । ଦଲୁ କହିଲା ତୋ ବାଁ ହାତଟା ଚଗଲା । ଜେଜେବାପା କହିଲେ, ହଁ ମୁଁ ତୋ ବାଁ ହାତ କଥା କହୁଚ । ବୁଝିଲ ପିଲାଏ ଇମିତ ହେବାର

କାରଣ ହେଲା, ଆମର ମୁଣ୍ଡ ଭିତରେ ଯେଉଁ ବ୍ରେନ ଅଛି, ତାର ଗଢ଼ଣର ଅସମତା ନେଇ ଇମିତ ହୋଇ-ଥାଏ । ମଣିଷ ବ୍ରେନର ବାଁ ପାଖ ଦେହର ଡ଼ାହାଣ ପାଖଟାକୁ ଚଳାଏ । ସିମିତ ତାର ଡ଼ାହାଣ ପାଖ ଦେହର ବାଁ ପାଖକୁ ଚଳାଏ ।

ଆମ ବ୍ରେନର ବାଁ ପାଖ ଶରୀରର ଡ଼ାହାଣ ପାଖ ଉପରେ ଅଧିକ ପ୍ରଭାବ ଥିବାରୁ ଆମର ଡ଼ାହାଣ ପାଖ ବେଶ ଚଞ୍ଚଳ । ଅଧିକାଂଶ ଲୋକଙ୍କ ପାଖରେ ଏହା ଦେଖାଯାଏ । ଏପରି ଅଳ୍ପ କେତେକ ଲୋକ ଥାଆନ୍ତି ଯାହାଙ୍କର ବ୍ରେନର ଡ଼ାହାଣ ପାଖ ବେଶି କାମିକା ଫଳରେ ଦେହର ବାଁ ପାଖ କାନ ଅଧିକ ଚଞ୍ଚଳ । ସେମାନଙ୍କର ଡାହାଣ ହାତ ଅପେକ୍ଷା ବାଁ ହାତ ଅଧିକ କାମ କରିଥାଏ । ସେଇଥିପାଇଁ ସେମାନେ ବାଉଁଆ । ଆମ ମିଠଲ କଥା ସେଇଆ । ତା ବାଁ ହାତଟା । ସବୁଥିରେ ଆଗୁଆ ।

ପିଲାଏ ସମସ୍ତେ ହୋ ହୋ ହୋଇ ହସି ଉଠିଲେ ।

ଜେଜେ କହିଲେ ଏଇ ବାଁ ଡ଼ାହାଣର ପ୍ରଭେଦ ଗୋଡ଼ରେ ମଧ୍ୟ ଅଛି । ଦ ଗୋଡ଼ର ବଳ ସମାନ ନୁହେଁ । ଆମର ବାଁ ପାଖରେ ଅଛି ହୃତ୍‌ପିଣ୍ଡ ଆଉ ଡ଼ାହାଣ ପାଖର ଲିଭର୍ । ଭିତର ଗଠନରେ ମଧ୍ୟ ଅସମାନ ରହିଛି । ଆମ ଦେହ ଗଠନରେ ମଧ୍ୟ ଅସମାନତା ରହିଛି । ପଶୁ ପକ୍ଷୀ ମାନଙ୍କଠାରେ ମଧ୍ୟ ସେଇକଥା । ସମସ୍ତଙ୍କ ପ୍ରକୃତ ମଧ୍ୟ ସମାନ ନୁହେଁ । ଅସମାନତା ଭିତରେ ସବୁ ଠିକ୍ ଚାଲିଛି ।

ପିଲାଏ ବୁଝିଗଲେ । ପୁଣି ଖେଳରେ ମାତିଲେ । ●

# ଆମ ପୋଷା କୁକୁରର କାହାଣୀ

ଷଠଲ୍ ସେଦନ ତା' କୁକୁର ଛୁଆକୁ ଆଉଁଷୁ ଥାଏ । ଛୁଆଟି ଲାଞ୍ଜ ହଲାଉ ଥାଏ । ତା ପାଥିରେ ଆସି ମିଶଗଲେ ସାଙ୍ଗମାନେ । କୁକୁର ଛୁଆଟା ସମସ୍ତଙ୍କର ଖେଳନା ପାଲଟିଗଲ୍ ।

ଲମ୍ବା ଲମ୍ବା କାନ ଦଇଟା ତଳକୁ ଓହଳ ପଡ଼ଥାଏ । ସାର୍ ଦହରେ କଅଁଳଆ ଲୋମ ହାତକୁ ଭାର କଅଁଳ



ଲଗୁଥାଏ । ସେମାନେ ତାକୁ ଆଉଁଷୁଥାନ୍ତି । ସେ କରୁଥାଏ କୁଉଁ କୁଉଁ । ଭାର ମଜା ଲଗୁଥାଏ ।

ମିଠଲଟା ହର ଚଗଲ୍ । ସେ ଦଉଡ଼ିଟାଏ ଆଣି ତା ବେକରେ ବାନ୍ଧୁଥାଏ । ତାକୁ ଘୁଷାରୁଥାଏ । ସେ କେଁ

କେଁ ହେଉଥାଏ । କୁକୁର ଛୁଆଟା ପିଲାଙ୍କର ହୋଇଥାଏ ଖୁବ୍ ଗେଲବସର । ପିଲାଏ ଯୁଆଡ଼େ ଯାଆନ୍ତି ସେ ତାଙ୍କ ପଛେ ପଛେ ଦଉଡ଼େ ।

ସଞ୍ଜବେଳେ ଜେଜେବାପା ବାହାର ପିଣ୍ଡାରେ ବସିଥାନ୍ତି । ନାତି ନାତୁଣୀମାନେ ଆସି ପହଞ୍ଚିଗଲେ । ଦଳୁ କହିଲା, ଜେଜେବାପା ଆଜି ଗୋଟାଏ ନୂଆ କଥାଣି କୁହ ।

କାହାକଥା କହିବି ?

ବଠଲ୍ କହିଲା କୁକୁର ଗପ କୁହ । ସମସ୍ତେ ଏକ-ସଙ୍ଗରେ କହିଲେ, ହଁ ହଁ କୁକୁର ଗପ କୁହ । ସେତେ-ବେଳେ କୁକୁର ଛୁଆଟା ତାଙ୍କ ପାଦ ପାଖରେ ଶୋଇ ଜୁଲୁଜୁଲୁ କରି ଚାହୁଁଥିଲା ।

ଜେଜେବାପା କହିଲେ, "କିରେ ପପି, ଆଜି ତୋ କଥା କୁହାଯିବ । ନୂହେଁ । ତୁ ମଧ୍ୟ ତୋ ଗପ ଶୁଣ ।"

ମିଠଲି ତାଳି ମାରି ମାରି କହିଲା, "ଖୁବ୍ ମଜା ହେବ ।"

"ବୁଝିଲ ପିଲାଏ ! ସଂସାରରେ ତ ଅନେକ ପଶୁ ପକ୍ଷୀ ଅଛନ୍ତି । ସବୁରି ଭିତରେ ଏଇ କୁକୁର ମାନେ ହେଉଛନ୍ତି ମଣିଷର ଅନେକ ଦିନର ସାଥି । ଆଉ ମଧ୍ୟ ସବୁଠାରୁ ଖୁବ୍ ବଡ଼ ସାଥି ।

ହଜାର ହଜାର ବର୍ଷ ତଳର କଥା କହୁଚି । ସେତେବେଳେ ମଣିଷ ବଣରେ ରହୁଥିଲା । ପଥର

ଖୋଲ ତାର ଘର ଥିଲା । ସେତେବେଳେ ମଧ୍ୟ କୁକୁର ଥିଲା ମଣିଷର ସାଥୀ । ସେତେବେଳେ ରାକ୍ଷସମାନେ ବଣରେ ରହୁଥିଲେ । ମଣିଷକୁ ମାରି ଖାଇ ଯାଉଥିଲେ । କୁକୁର ମଣିଷକୁ ବିପଦ ବେଳେ ସାହାଯ୍ୟ କରୁଥିଲା । କୁକୁରକୁ ସେମାନଙ୍କର ବଡ଼ ଭୟ । ତାହାଲ କୁକୁରକୁ ବାଘ ସିଂହ ମଧ୍ୟ ଡରନ୍ତି । ମଣିଷର ପ୍ରଥମ ସାଥୀ ହେଉଛି କୁକୁର ।

ରେମାନ ପଚାରିଲା, "ଅଜା କୁକୁର ମାନଙ୍କର ବାବା ବୋଉ ନାହାଁନ୍ତି ? ସେମାନେ ତାଙ୍କ ପାଖରେ ନ ରହି ମଣିଷ ପାଖରେ କାହିଁକି ରହନ୍ତି ?

"ଆରେ ପଗଲୀ । ସମସ୍ତେ ତାଙ୍କ ବାପ ମା ପାଖରେ ପିଲାବେଳେ ରହନ୍ତି । ବଡ଼ ହୋଇଗଲା ପରେ ତାଙ୍କ ବାପ ମାଙ୍କର ସାହାଯ୍ୟ ଆଉ ଦରକାର ପଡ଼େନି । ବାପ ମା ପିଲାଙ୍କୁ ଛାଡ଼ି ଦିଅନ୍ତି । ନିଜ ପାଇଁ ନିଜେ କାମ କରିବାକୁ ।"

ହଁ ଆଉ ଗୋଟିଏ କଥା କହୁଚି, କୁକୁରଙ୍କର ବାପ ହେଉଛନ୍ତି ହେଟା ବାଘ, ବିଲୁଆ. କୋକିଶିଆଳ । ସେମାନେ ଏମାନଙ୍କ ବଂଶଧର । ସେମାନଙ୍କର ପ୍ରକୃତି ପ୍ରାୟ ଏକ ପ୍ରକାରର । ସେମାନେ ବଣରେ ରହନ୍ତି । ମଣିଷର ପୋଷା ମାନନ୍ତିନି । କିନ୍ତୁ କୁକୁର ପୋଷାମାନେ । ମଣିଷର ପାଖେ ପାଖେ କୁକୁର ରହୁଥିବାରୁ ତାର ପ୍ରକୃତିର କିଛିଟା ପରିବର୍ତ୍ତନ ହୋଇଛି । ମଣିଷ ତାକୁ ନିବେଡ଼ିତା କଥା ଶିଖେଇଚି ।

ଆଜକାଲ ବିଲାତ, ଆମେରିକା, ଜାପାନ ପ୍ରଭୃତି ଦେଶରେ କୁକୁର ମାନଙ୍କର ଆଦର ଅଧିକ । ଶହ ଶହ କିସମର କୁକୁର ଅଛନ୍ତି । ଗୋଟିଏ ଗୋଟିଏ କୁକୁର ଛୁଆ ହଜାର ହଜାର ଟଙ୍କାରେ ବିକି ହୁଅନ୍ତି । କୁକୁର ବିକି କରି ଲୋକମାନେ ବହୁତ ଲାଭ ପାଆନ୍ତି । ଏହା ବ୍ୟବସାୟ ହୋଇଯାଇଛି ।

ଲିସା କହିଲା, "ଆମ ସାର୍ କହୁଥିଲେ ଆମ ଓଡ଼ିଶାରେ ବି କୁକୁର ବ୍ୟବସାୟ ହେଉଛି । ପାରଳା ଖେମୁଣ୍ଡିଠାରେ ଅନେକ ତେଲଗୁ ଲୋକ ରହନ୍ତି । ସେମାନେ କୁକୁର ବ୍ୟବସାୟ କରୁଛନ୍ତି । "ହଁ ଠିକ୍ କଥା ।

ଆମର ଏଠାରେ ମଧ୍ୟ ଶହ ଶହ ଟଙ୍କା ଦେଇ ଲୋକମାନେ କୁକୁର ଛୁଆ କିଣି ପୋଷୁଛନ୍ତି । କୁକୁର ମାନଙ୍କର ଅନେକ ଜାତି ଅଛି । ଭଲ ଜାତିଆ କୁକୁରର ଦାମ୍ ବେଶି । କୁକୁରମାନଙ୍କର କାମ ନେଇ ଆଜିକାଲି ତାଙ୍କୁ ଛଅ ଭାଗରେ ବିଭକ୍ତ କରାଯାଇଛି ।

ଲିପି ପଚାରିଲା ସେଗୁଡ଼ିକ କଣ କଣ ?"

ହଁ ସେଗୁଡ଼ିକ ହେଲା, ଶିକାରୀ କୁକୁର । ଏମାନେ ପବନରୁ ବାସନା ଜାଣି ପାରନ୍ତି । ଆଖି ପିଛୁଳାକେ ବିଜୁଳି ବେଗରେ ଯାଇ ଶିକାରକୁ ଧରନ୍ତି । ଆଉ ପ୍ରକାରେ ଶିକାରୀ କୁକୁର ଅଛନ୍ତି ତାଙ୍କୁ "ହାଉଣ୍ଡ" ଜାତି ବା କୁକୁର କୁହାଯାଏ । ମାଟି ଶୁଙ୍ଘି ଶୁଙ୍ଘି ସେମାନେ ଶିକାରର ସଂଧାନ କରନ୍ତି । ଆଉ ଏକ ପ୍ରକାର ଶିକାରୀ କୁକୁର ଅଛନ୍ତି ଯେଉଁମାନେ ତାଙ୍କ ନଖରେ ମାଟି ଖୋଳି ତା

ଭିତରୁ ଶିକାରର ସଂଧାନ କରନ୍ତି । କେତେ ଗୁଡ଼ାଏ କୁକୁର ଅଛନ୍ତି ସେମାନେ ଶ୍ରମିକ । ସେମାନେ କାମ କରି ପେଟ ପୋଷନ୍ତି ।

ମାନେ ? ପଚ୍ଚରିଲା ଲିପି ।

ମାନେ ନିଜେ ନିଜେ ପରିଶ୍ରମ କରି ଖାଦ୍ୟ ସଂଗ୍ରହ କରନ୍ତି । ଗୁଡ଼ାଏ ଖେଳନା କୁକୁର ଅଛନ୍ତି । ଦେଖିବାକୁ ଠିକ୍ ଖେଳନା ପରି । ଅତି ଛୋଟ । ଦେହ ସାରା ଲୋମ । ତାଙ୍କୁ ଧରିବାକୁ ମଜା ଲାଗେ । ସେମାନେ ମଣିଷର ପାଖ ଛାଡ଼ନ୍ତିନି ।

ହଁ ହଁ ମୁଁ ଦେଖିଛି । ମୋ ସାଙ୍ଗ ଘର ସିମିତ କୁକୁରଟିଏ ରଖିଛନ୍ତି କହିଲା ବଠଲ ।

ଆଉ ଗୋଟାଏ ପ୍ରକାର କୁକୁର ଅଛନ୍ତି ସେମାନେ ଶିକାର କରି ପାରନ୍ତିନି । ମିଶାମିଶି କୁକୁର ।

ଏବେ କୁକୁର ସାହାଯ୍ୟରେ ମଣିଷ ଚୋର ଧରି ପାରୁଛି । ଡାକୁ ଶଇତାନ ମାନଙ୍କୁ ଧରୁଚି । ମଣିଷର ଅନେକ କାମ କରୁଚି । ମଣିଷ ତାକୁ ନାନା କଥା ଶିଖାଉଚି । ଯାହା ହେଲେ ବି ତାର ପଶୁ ପ୍ରବୃତ୍ତି ରହିଛି । ହାଡ଼ ଖଣ୍ଡେ ପାଇଲେ ତାକୁ ଚୋବାଇବ, ବାକିତକ ନେଇ ଲୁଚାଇ ରଖିବ । କୁକୁର ଶୋଇବା ପୂର୍ବରୁ ପ୍ରାୟ ତିନିଥର ଘୁରି ତା ପରେ ଶୁଏ । ଗଧିଆଙ୍କ ପରି କୁକୁର ମାନଙ୍କର କିଛିଟା ପ୍ରକୃତି ରହିଛି ।

ସେତେବେଳକୁ କୁକୁର ଛୁଆଟା ଆଗ ଗୋଡ଼ ଦିଇଟା ଲମ୍ବାଇ ତା ଉପରେ ମୁଣ୍ଡଟା ରଖି ଜୁଲୁ ଜୁଲୁ ହୋଇ ଚାହିଁ ଥାଏ । ପିଲାଏ ହସୁଥାନ୍ତି ।

## ପେଠା ଦଣା

ଆଜି ପିଲମାନଙ୍କ ଭିଡ଼ ଜେଜେମାଙ୍କ ପାଖରେ । ଜେଜେ ମା' ସବୁ ପିଲଙ୍କୁ କାମରେ ଲଗାଇ ଦେଇଛନ୍ତି । କାହାକୁ ପଠେଇଛନ୍ତି ଅଁଳା ଡ଼ାଳ ଆଣିବାକୁ, କିଏ ଯାଇଚ ବାଉଁଶ ଡାଳ ଆଣିବାକୁ, କିଏ ଯାଇଚ ବଣସାରୁ ନାଡ଼ ଆଣିବାକୁ । ଘର କାମ କରୁଥିବା ପିଲ ମାଧବ କହିଲେ, ସେ ଯାଇଚ ଅପାମାରଙ୍ଗ ଡାଳ, ବଜ୍ରମୂଳୀ ଗଛ, ଅମର ଜୁଇ ଡ଼ାଳ ଆଣିବ ।

ଆଜି ଷଠୀ ଓଷା । ଜେଜେ ମା'ଙ୍କ ଗୋଡ଼ ତଳେ ପଡ଼ୁନି । ପିଲାଙ୍କର ଫୁରସତ ନାହିଁ । ସେ ମଝିରେ ମଝିରେ ଡ଼ାକ ଛାଡ଼ୁଥାନ୍ତି । ପିଲଏ ! ବେଇଗି ବେଇଗି ଯାଅ । ଗାଧୋଇ ପକାଅ । ପୂଜା ଆରମ୍ଭ ହେବ ।

ବୋହୂଙ୍କୁ ଡ଼ାକିଲେ, କହିଲେ, "ମୁଁ ମାଟିରେ ଯୋଉ ଛଟି ମୂର୍ତ୍ତି ଗଢ଼ିଚି, ତାଙ୍କୁ ନେଇ ନୂଆ ଶୃଙ୍ଗଡ଼ାରେ ରଖ । ଛ'ଅ ପ୍ରକାରର ଡାଳ ବରାଦ ଅନୁସାରେ ଆସିଗଲା । ଜେଜେମା ହଳଦିଆ ସୂତା ଛଅ କେରାରେ ଛଅ ଗଣ୍ଠି ପକାଇ ଠାକୁରଙ୍କୁ ମଣ୍ଡି ବାକୁ ରଖିଲେ ।

ଜେଜେମା ପୂଜା ଆରମ୍ଭ କଲେ । ଜେଜେବାପାଙ୍କୁ ଛାଡ଼ିଦେଲେ ଘରର ସମସ୍ତେ ଧାଡ଼ିକରି ଠାକୁରଙ୍କ ପାଖରେ ବସିଗଲେ । ଜେଜେ ମା ପୂଜାସାରି ସେଇ ଛ'ଟିଡାଳରେ ଗୋଟିଏ ତୋଛା କରି ସେଥିରେ ସମସ୍ତଙ୍କୁ ଛଅଥର ଲେଖାଏଁ ବାଡ଼େଇଲେ । ପିଲଏ କହୁଥାନ୍ତି କୀ···କୀ··· ।

ଲିପି, ବଠୁ, ମିଠୁ, ରେମାନୀ, ସୋମାନୀ ସମସ୍ତେ ହସିହସି ଗଡ଼ି ଯାଉଥାନ୍ତି । ଜେଜେମା ତାଙ୍କର ନନା ବୋଉଙ୍କୁ ତାଙ୍କ ସାଥିରେ ବସାଇଛନ୍ତି ମାଡ଼ ଦେବାକୁ । ସେମାନେ ମଧ୍ଯ ଏଇ ଡ଼ାଳରେ ଛଅଥର ମାଡ଼ ଖାଇଲେ । ଆଜି ଜେଜେମାଙ୍କ ରାଜପଣ ଘରର ସବୁରି ଉପରେ । କି ଆନନ୍ଦ । ତାପରେ ଷଠୀ ଡୋରି ଆଣି ଜେଜେମା ସବୁରି ହାତରେ ବାନ୍ଧି ଦେଲେ ।



ପିଲାଏ ମହାଆନନ୍ଦରେ ପିଠା ପଣା ଖାଇଲେ ।

ବଠୁ ପଚାରୁଥାଏ, ଏଇଟା କି ପିଠା, ଏ ପିଠା ନାଁ କଣ, ଏ ପିଠାକୁ କଅଣ କହନ୍ତି । ୟା ନାଁ କଣ ? ତା ନାଁ କଣ ! ଜେଜେମା ତାକୁ ବୁଝାଉ ଥାନ୍ତି । ସେ କହିଲେ, "ବଠଲ୍ ବାବା ! ତମେ ଏବେ ଖାଅ । ମୁଁ ସଞ୍ଜ ବେଳକୁ ପିଠା ଗପ କହିବ । ଆମେ କେତେ ପିଠା କରୁ ତମେ ଜାଣିବ ।

ଝଠିଲ ଆଉ ପ୍ରଶ୍ନ ନ ପଚାରି ଖାଇବାକୁ ଲାଗିଲା । ଝିଅପିଆର ଧୂମ ଧାମ ଯିମିତ ଦଆ ନଆର ଧୂମଧାମ ବ ସିମିତ ।

କ୍କ ଆନନ୍ଦ ।

ଠକ୍ ସଞ୍ଜ ବେଳକୁ ପିଲାଏ ବେଢ଼ିଗଲେ । ସମସ୍ତ-ଙ୍କର ସେଇ ଗୋଟାଏ ଅଳି, ଜେଜେମା ! ତମେ ଗପ କୁହ । ପିଠା ଗପ...ପିଠା ଗପ ।

ସେ କହିବା ଆରମ୍ଭ କଲେ ।

ବୁଝିଲ ପିଲାଏ, ମୁଁ ସିନା ତମକୁ "ପିଠାପଣା" ବୋଲ କହୁଥିଲ । ପଣା ବୋଲ ଆମେ କିଛ କରୁନ । ଆମର ଭିନ୍ନଭିନ୍ନ ପିଠାକୁ ପିଠାପଣା ବୋଲ କୁହାଯାଏ ।

ତମେତ ସବୁ ଦେଖୁଚ, ମୁଗ, ବର ଗହମ, ଚାଉଳ ଏ ସବୁ ଚୁନା କର ପିଠା ସବୁ ତଆର ହେଉଛି । ଆମ ଗାଁ ମାନଙ୍କରେ ଲୋକେ ଚାଉଳକୁ ଢିଙ୍କିରେ କୁଟି ଚୂନା ବାହାର କରନ୍ତି । କିଏ ବା କଳରେ ଚାଉଳ, ଗହମ ପେଶି ଚୁନାକରନ୍ତି । ଆଉ କିଏ ଚାଉଳ, ବର, ମୁଗ, ଚଣା କୋଳଥ, ଘାଲୁଅ ସବୁ ଶିଳରେ ବାଟି ପିଠଉ କରନ୍ତି । ପିଠଉରୁ ପିଠା ତଆର ହୁଏ ।

ପିଠା ଅନେକ ପ୍ରକାରର । ପିଠାତଆର କୌଶଳ ମଧ୍ୟ ଭିନ୍ନ । ଚକୁଳି ପିଠା ମାଟି ପଲମ କିମ୍ବା ତାଉଆରେ ତଆର ହୁଏ । ପୋଡ଼ ପିଠା, ପିଠଉକୁ ନିଆଁରେ ପୋଡ଼ି ତଆର ହୁଏ । ଘିଅ ବା ତେଲରେ ପିଠା ଛାଣି ଛଣା ପିଠା ତଆର ହୁଏ ।

ଲଫି ପଗ୍ଭରଲା, କେବେ କୋଉ ପ ଠା କରନ୍ତି ?

ଜେଜେମା କହିଲେ, ଆମ ଓଡ଼ିଆ ଘରେ ବାର ବରତ ତେର ଓପାସ। ସବୁ ମାସରେ ପର୍ବ ପର୍ବାଣି ଲାଗି ରହିଛି। ଭିନ୍ନ ଭିନ୍ନ ପର୍ବ ପର୍ବାଣିରେ ଭିନ୍ନ ଭିନ୍ନ ପ୍ରକାରର ପିଠା। ସବୁ ଠାକୁର ସବୁ ପିଠାକୁ ଭଲ ପାଆନ୍ତିନ। ଠାକୁରଙ୍କୁ ନେଇ ପିଠା। ଖାଲି ସେତିକି ନୁହେଁ ଋତୁ ଅନୁସାରେ ମଧ୍ୟ ପିଠା। ଯୋଉ ସମୟରେ ଯୋଉ ଜିନିଷ ମିଳୁଚି ତାକୁଇ ନେଇ ପିଠା ସବୁ ତିଆରି ହୋଇଥାଏ।

ଜେଜେମା···ଜେଜେମା ! କେତେବେଳେ କେଉଁ ପିଠା କରାଯାଏ ଆମକୁ କହିବ ?

ଜେଜେ ମା' ହସିଲେ।

ଏଁ ! ହସୁଚ କଣ ମ ! କହୁନ।

ସେ କହିଲେ, "ଏଇ ପିଠାକୁ ନେଇ ଗୀତଟିଏ ଅଛି।" ଲଫି, ମିଠୁ, ବଜ୍ରୁ, ଲସା ସମସ୍ତେ ଏକ ସ୍ୱରରେ କହିଲେ ଜେଜେମା ! ତମେ ଗୀତ ଗାଅ ଆମେ ଯାଉଚୁ ବୋଉଙ୍କୁ ଡ଼ାକି ଆଣିବୁ।

ଜେଜେମା ସମସ୍ତଙ୍କୁ ଆଖି ଦେଖାଇ କହିଲେ, "ଏ ସାବଧାନ ! କାହାକୁ ଡ଼ାକିଲେ ମୁଁ ଗପ ବନ୍ଦ କରି ଦେବି। ତମେ ସବୁ ବସି ଶୁଣ।" ନାଇଁ···ନାଇଁ ଆମର ଆଉ ଟିକି ଦରକାର ନାହିଁ। ତମେ ଗୀତ ଗାଅ, ଆମେ

କେବେ ତମ ଗୀତ ଶୁଣିନୁ । ଗୀତ ଗାଅ । ଲପି ! ବୋଉଙ୍କୁ ଡାକନା । କେଜେମା ଲଜ ଖାଇଯିବେ ।" କହଲ ଲସା ।

ଲସା ଠିକ୍ କହୁଛ । ମୁଁ ତ ବୁଢ଼ୀଲୋକ, ମୋର ପାଟିରେ ଆଉ ଦାନ୍ତ ନାହିଁ । ପବନ ଫସ ଫାସ ବାହାରି ଯାଉଚ, କି ଗୀତ ଗାଇବି । ମୋତେ ଲଜ ମାଡ଼ିବନି ।

"ନାହିଁ ଗାଅ ।"

ଆଚ୍ଛା ଶୁଣ ମୁଁ ଭୁକ ଭୁକ ଗାଉଛ ।

ମଗୁଶିରେ ନଆ ବର ଚାଉଳ<br>
ବରପିଠା ଖାଇ ସରବେ ଭୋଳ ।<br>
ପଉଷେ ବଉଳ ମଣ୍ଡା ଗଇଁଠା<br>
ଖାଆନ୍ତ ମଜାରେ ଯେ ପୋଡ଼ପିଠା<br>
ମାଘେ ମାଘୁଆଣି ଯେ ସରପୁଳ<br>
ଛେନାପୋଡ଼ ପିଠା ଫଗୁଣେ ଦୋଳୀ<br>
ଚଇତ ମାସରେ ନମ ଚକୁଳ<br>
ବଇଶାଖେ 'ଛୁଞ୍ଚିପତର' ପାଳ<br>
ଜ୍ୟେଷ୍ଠେ ପାଳୁଅମଣ୍ଡା ଖାଇବୁ<br>
ଆଷାଢ଼ରେ ବିରିଲଡୁ ପାଇବୁ<br>
ଶ୍ରାବଣେ ଖାଇବୁ ଚିତଉପିଠା<br>
ଭାଦ୍ରବରେ ତାଳ କାକରା ମିଠା

ଅଶିଣେ ଆରଷା ମେ ନାନାମାନ
କାରତକେ ମାଲପୁଆ ତୁ ଆଣ
ତା ସାଥିକୁ ମିଠା ମୁଗ ଚକୁଳ
ଖାଇ କରୁଥିବୁ ସୁଖେ ପାକୁଳ ।

ପିଲାଏ ସମସ୍ତେ ହସି ଉଠିଲେ । ଜେଜେମା'ଙ୍କ ପାକୋଇ ପାଟିରୁ ଲାଳ ଖସି ଆସିଲା ତଳକୁ । ମିଠୁ କହିଲା ଜେଜେମା ! ପିଠା ମିଠା ଲାଗିଲା ?



# ଶିକାରୀ ଗଛ

ଆଜି ପିଲାଏ ଜେଜେ ବାପାଙ୍କ ଠାରୁ ଗୋଟାଏ ନୂଆ ଗପ ଶୁଣିବେ । ନୂଆମାନେ ବିଲକୁଲ ନୂଆ । ଇମିତ ଗପ ଆଗରୁ ସେମାନେ ଶୁଣି ନାହାଁନ୍ତି । ଜେଜେ ବାପା ଆଜି ପିଲାଙ୍କ ଠାରୁ ଦଶଥର ଖୋସାମଦ ଶୁଣିଲେଣି ।

ସଞ୍ଜ ହୋଇଗଲାଣି । ଆକାଶରେ ଜହ୍ନ ଉଠିଛି । ଜହ୍ନ ଆଲୁଅରେ ସବୁ ତୋଫା ଦେଖା ଯାଉଛି । ଦାଣ୍ଡ ପିଣ୍ଡାରେ ମସିଣାଟିଏ ପକାଇ ଜେଜେ ବାପା ବସିଛନ୍ତି । ସବୁ ପିଲା ଜମା ହୋଇଗଲେଣି । ମିଠଲ ସିଧା ଆସି କୋଳରେ ବସିଗଲା । ଆଉମାନେ ତଳେ ବସିଥାନ୍ତି । ସୋମାନୀ ଆସି ବାଧା କଲା । ସେ କୋଳରେ ବସିବ । ଭାଇନା ତଳେ ବସିବ । ଜେଜେ ବାପା ପଚାରିଲେ, ତୁ କାହିଁକି କୋଳରେ ବସିବୁ । ସେ କାହିଁକି ତଳକୁ ଯିବ ।

ସୋମାନୀ ଚଟ କରି କହିଲା, ମୁଁ କୁନି ପିଲା । ଭାଇନା ମୋଠୁ ବଡ଼ । ଏତିକିରେ ମିଠଲ ଆପେ ଆପେ ତଳକୁ ଚାଲିଗଲା । ସୋମାନୀ ବସିଲା କୋଳରେ । ଜେଜେ ବାପା ଗପ ଆରମ୍ଭ କଲେ ।

ଆଚ୍ଛା ପିଲାଏ ତମେ ସବୁ ଲାଜକୁଳି ଗଛ ଦେଖିଛ ?

ହଁ···ହଁ···ଦେଖିଚୁ । ତାକୁ ଛୁଇଁ ଦେଲେ ପତ୍ର ତାର ଲାଜରେ ବୁଜି ହୋଇଯାଏ । ତା ଫୁଲ ସବୁ ଗୋଲାପୀ ରଙ୍ଗର । ଛୋଟ ଛୋଟ ଗୋଲ ଗୋଲ ଫୁଲ । ଫୁଲର କେଶରରୁ ଲମ୍ବା ଲମ୍ବା ଲୋମପରି ଥାଏ । ଲୋମ ଆଗରେ ଗୋଟିଏ ଗୋଟିଏ ଗୋଲଆ ରେଣୁଥାଏ । ନୁହେଁ··· ? ଫୁଲଗଛ ତମକୁ ସବୁ କମିତ ଲାଗେ ?



ହର ବଢ଼ିଆ ଲାଗେ ଜେଜେ ବାପା । ଫୁଲ ଗୁଡ଼ାକ କେଡ଼େ କଅଁଳ । କେଡ଼େ ସୁନ୍ଦର । ଦେଖିଲେ ଆଖି ଲାଖି ରହିବ । ଫୁଲ ଦହରୁ କେଡ଼େ ସୁନ୍ଦର ବାସନା ବାହାରେ । ତା ମହକରେ ଖଣ୍ଡମଣ୍ଡଳ ମହକି ଉଠେ । କହିଲା ଲିପି ।

ଠିକ୍ କଥା ।

ବଠୁ କହିଲା, 'ମହୁ ମାଛିମାନେ ଆସି ଫୁଲରେ ବସନ୍ତି । ମହୁ ସଂଗ୍ରହ କରନ୍ତି । ମହୁ ପିଆ ଚଢ଼େଇ ଆସି ଫୁଲ ଗଛରେ ବସି ମହୁ ପିଏ ।

ଆରେ ବାଃ···ତମେ ତ ଅନେକ ଜାଣିଛ । ମୁଁ ତମକୁ କି କଥା ଆଉ କହିବି ? ଆଚ୍ଛା ଶୁଣ ଇମିତ ବି ଗଛ ଅଛନ୍ତି, ଯେଉଁମାନେ ହର ଭୟାନକ । ବଣର ବାଘ,

ଭାଲୁ, ସିଂହ, ହାତୀ ମାନଙ୍କଠୁ ମଧ୍ୟ ଆଉରି ଭୟଙ୍କର । ସେମାନଙ୍କୁ ଶିକାରୀ ଗଛ କୁହାଯାଏ ।

ଏଁ…କଣ କହୁଚମ ! ଗଛ ଶିକାର କରେ ? ସେତ ଚାଲି ପାରେନା । ତାର ତ ହାତ ଗୋଡ଼ ନାହିଁ ? ଶିକାର କରେ କେମିତ । କାହାକୁ ଶିକାର କରେ । କମିତ ଶିକାର କରେ ? ଏକାଥରକେ ଉକ୍ ଉକ କର କହ ଚାଲିଲା । ରେମାନୀ ।



ଜେଜେ କହିଲେ, "ସେ ଗଛ ବଡ଼ ଚାଲାକ୍ । ବଡ଼ ନୃଶଂସ । ବଡ ପୋକମାଛି କୀଟ ପତଙ୍ଗ ମାରି ଖାଇଯାଏ ।

ଆଉ ଏକ ପ୍ରକାର ଗଛ ଅଛି ତା ଦହରେ ମଣିଷ ପଶୁ ପକ୍ଷୀ ଲାଗିଗଲେ ଆଉ ବର୍ତ୍ତି ପାରନ୍ତିନି ।

ଗୋଟିଏ ପ୍ରକାରର ଉଦ୍ଭିଦ ଅଛି ତାକୁ "ପିଚର୍" କହନ୍ତି । ସେ ଗଛ ବେଶି ବଡ଼ ନୁହେଁ । ଏସିଆର କେତେକ ଅଞ୍ଚଳରେ ସେ ଗଛ ଦେଖାଯାନ୍ତି । ବୋର୍ଣ୍ଣିଓରେ ମଧ୍ୟ ଏହି ପିଚର ଗଛ ଅଛି । ତା ଦହରୁ ଏକ ପ୍ରକାର ଭରି ମିଠା ରସ ବାହାରେ । ତାକୁ ଖାଇବାକୁ କୀଟ ପତଙ୍ଗ ଲୋଭରେ ପଡ଼ି ଆସନ୍ତି । ଗଛର ଅଗ ଦେଖିବାକୁ ମାଠିଆ ପରି । ତା ଭିତରଟା ଖୁବ୍ ଚକଣିଆ । କୀଟ ପତଙ୍ଗ ଆସି ତା ଉପରେ ବସିଲେ ଆପେ ଆପେ ତଳକୁ ଆସି ଯାଆନ୍ତି । ଯେତେ ଚେଷ୍ଟା କଲେ ବି ଉଠି ପାରନ୍ତିନି ଉପରକୁ । ଥରେ ଖସିଲମାନେ ଖସିଲ । ତଳେ ଗୋଟାଏ ପ୍ରକାରର ତରଳ ପଦାର୍ଥ ଥାଏ । କୀଟ ପତଙ୍ଗ ଖସି ଆସି ସେଥିରେ ପଡ଼ିଗଲେ ଆଉ ରକ୍ଷା ନାହିଁ । ସେ ସେଥିରେ ଲଟ ପଟ ହେଇ ଶେଷରେ ମରିଯାଏ । ଗଛ ତାକୁ ଖାଇ ହଜମ କରିଦିଏ । ଏହା ହେଉଛି ଗଛର ଖାଦ୍ୟ ।

ପିଲମାନେ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି··· । ଦଳୁ କହେ "ମୋ ସାଙ୍ଗ ପରି କହୁଥିଲା । ତାଙ୍କ ବାଡ଼ରେ ଇମିତ ଗଛଟାଏ ତା ବାପା ଲଗେଇଚନ୍ତି । ସେ ଗଛ ଉଇ, ପିମ୍ପୁଡ଼ି, ଝିଟିପିଟି, ଗଧା, ଖାଇଯାଉଚି । ସେ ଗଛ ତାଙ୍କ ବଗିଚାକୁ ଜଗିଚି ।

ସମସ୍ତେ ହସି ଉଠିଲେ । ତା ପରେ କହିଲେ, "ଜେଜେ ବାପା ଆଉର କୁହ ।"



"ହଁ ଆଉ ଗୋଟିଏ ଗଛ ଅଛି ତା ନାଁ ହେଉଛି "ସନ୍ ଡ୍ରଉ" । ଯେ ଗଛ ମଧ୍ୟ ମଶା ମାଛି, କୀଟ ପତଙ୍ଗ ଖାଇଯାଏ । ଏହି ଗଛର ପତ୍ର ଗୁଡ଼ିକର ଉପର ପାଖ ସରୁ ସରୁ ଲୋମ ପରି ହୋଇଥାଏ । ସେଥିରେ ଏକ ଅଠାଳିଆ ତରଳ ପଦାର୍ଥ ବାହାରେ । କାକର ବୁନ୍ଦାପରି ଏହା ଜକ୍ ଜକ୍ କରୁଥାଏ । କୀଟ ପତଙ୍ଗ ତାକୁ ଦେଖି ଲୋଭରେ ଟାଣି ହୋଇ ତା ଆଡ଼କୁ ଆସନ୍ତି । ତା ଉପରେ ଥରେ ବସିଗଲେ ଏହି ଲୋମ ଗୁଡ଼ିକ ତାକୁ ଧରି ପକାଇ କାବୁ କରିଦଅନ୍ତି । ତା ପରେ ସେଇ ତରଳ ପଦାର୍ଥରେ

ଲାଖିଯାଇ କିଛି ସମୟ ପରେ ତାହା ମରିଯାଏ । ଦିନେ ଦୁଇଦିନ ଭିତରେ ସେ ହଜମ ହୋଇଯାଏ ।

ଆଉ ଏକ ବର୍ଷାକୁ ମାଛିମରା ଗଛ ଅଛି । ତା ପତ୍ର କଟା କଟା ଜଣା ପଡ଼େ । ମାଛି ବସିଗଲେ ତାକୁ ଏହା ଧରିନିଏ ଓ ତାପରେ ତାକୁ ଖାଇ ହଜମ କରିଦିଏ ।

ମିଠଲ ବୁଝିଲା ପରି ଜଣାଯାଉଥାଏ । ଉଠି ଆସି କହିଲା, ଏ ଗଛଗୁଡ଼ାକ ଭିତରେ ଇମିତ ଡାକୁ ଅଛନ୍ତି । ମୋ ହାବୁଡରେ ପଡିଲେ ମୁଁ ସାବାଡ଼ କରି ଦିଅନ୍ତି । ସମସ୍ତେ ହସି ଉଠିଲେ ।



# ଫଗୁଣ ଫଗୁ

ସମସ୍ତଙ୍କ ପାଇଁ ଆଜି ପିଚକାରୀ କିଣା ଯାଇଛି । ଭିନ୍ନ ଭିନ୍ନ ରଙ୍ଗର । ଲାଲ୍, ହଳଦିଆ, ନୀଳ, ଗୋଲାପୀ ସାଗୁଆ । ସମସ୍ତେ ବଛା ବଛି କରି ପିଚକାରୀ ନେଇ-ଗଲେ । ଶେଷକୁ ଥିଲା ମିଠଲ୍ । ତା ପାଇଁ ଯେଉଁଟା ଥିଲା ସେ ତାକୁ ନେଲାନି । ତାର ଜିଦ୍, ବିଠଲ୍ ଭାଇନା ଯୋଉ ପିଚକାରୀ ଧରିଛନ୍ତି ମୁଁ ସେଇଟା ନେବି । ସେଇଟା ମୋର ।

ବିଠଲ କହୁଛି ମୁଁ ଦେବିନି, ସେଇଟା ମୋର । ଦିହିଙ୍କ ଭିତରେ ମାଡ଼ଗୋଳ ଧସ୍ତାଧସ୍ତି ଆରମ୍ଭ ହୋଇ ଗଲାଣି । ମିଠଲ କହୁଛି ମୁଁ ନେବି, ବିଠଲ କହୁଛି ମୁଁ ଦେବିନି । ଦିହିଁଙ୍କୁ ଦିହେଁ ମହାବଳୀ ।

ଜେଜେ ବାପା ଠିକ୍ ଏତିକିବେଳେ ବେଲକାଲ ଉଣ୍ଡି ପହଞ୍ଚିଗଲେ । କହିଲେ,

ଗୀତ ଗାଇ ଗାଇ କହିଲେ—

"ହୋଇରେ ପିଲେ ଫଗୁ
ଲାଲ ଗୋଲାପୀ ଫଗୁ
କେଡ଼େ ବଢ଼ିଆ ଫଗୁ
ପିଚକାରୀଟା ଦେବୁ
ଫଗୁ ଟିକିଏ ନେବୁ ?

ଏତକ କହି ମିଠଲର ପିଚକାରୀଟା ନେଇଗଲେ । ବଲ୍ଲୁ ଲଫା ଚଲେଇ ଉଠିଲେ । କହିଲେ ।" ମିଠୁ···ମିଠୁ ଜେଜେ ବାପା ତୋ ପିଚକାରୀ ନେଇଗଲେ ।"

ମିଠଲ ବଠଲ ପାଖକୁ ଚାଲି ଆସି ନାକରେ କାନ୍ଦି କାନ୍ଦି କହିଲା ମୋ ପିଚକାରୀ ଦିଅ । ଜେଜେ ବାପା ତା ହାତକୁ ପିଚକାରୀଟା ବଢ଼ାଇ ଦେଇ ତା ମୁଣ୍ଡରେ ଅବିର ଟିକିଏ ବୋଳି ଦେଲେ । ସେ ଆନନ୍ଦରେ ନାଚି ନାଚି ସମସ୍ତଙ୍କୁ ତା' ବୀର ପଣିଆ ଦେଖାଇଲା । ତା କଳା ବାଳରେ ଗୋଲାପ ଅବିର ଭାରି ମାନୁଥାଏ ।



ଗୋଳମାଳ ତୁଟିଗଲା । ବଠଲ ମଠଲ ପୁଣି ମିଶି-ଗଲେ । ଜେଜେ ବାପା ଫଗୁ ଆଣିବେ । ଫଗୁଖେଳ ହେବ । କାଲି ଦୋଳ ପୁନେଇଁ । ଗାଁ ପଡ଼ିଆରେ ହେବ ଦୋଳ ବେମେଳଣ । ତା ପରଦିନ ହୋଲି ଖେଳ । କେଡ଼େ

ମଜା । କାହାର ଆଖିରେ ନିଦ ନାହିଁ କି ପେଟରେ ଭୋକ ନାହିଁ ।

ଘର ଘର ଠାକୁରଙ୍କ ଗସ୍ତର ବୁଲୁଚି । ବିମାନରେ ବସି ଠାକୁରେ ପ୍ରତି ଘରକୁ ଆସୁଛନ୍ତି, ଭୋଗ ଖାଇବାକୁ । ବାଜା ବଜାଇ ଘଣ୍ଟ ପିଟି ମହା ଆନନ୍ଦରେ ଲୋକେ ଠାକୁରଙ୍କୁ ବିମାନରେ ଆଣୁଚନ୍ତି ।

ରେମାନୀ ପଚାରିଲା, "ଅଜା ! ଆମେ ତ ଠାକୁରଙ୍କ ପାଖକୁ ଯାଉଚୁ । ସେ କାହିଁକି ଆମ ମାନଙ୍କ ଘରକୁ ଆସୁ-ଛନ୍ତି ଭୋଗ ଖାଇବାକୁ ।



"ବଢ଼ିଆ କଥାଟାଏ ପଚାରିଲୁ ରେମାନୀ । ଜେଜେ କହିଲେ ଆମେ ତ ବରଷ ତମାମ ମନ୍ଦିରକୁ ଯାଉଚୁ ଠାକୁରଙ୍କ ପାଖକୁ । ବରଷର ଏଇ ଗସ୍ତର ପାଞ୍ଚଦିନ ଠାକୁରେ

ଆମ ଘରକୁ ଆସନ୍ତି । ଏଇ ଯିବା ଆସିବା ଯୋଗୁ ମଣିଷ ଆଉ ଠାକୁରଙ୍କ ଭିତରେ ସମ୍ପର୍କ ବଢ଼ୁଚି । ସ୍ନେହ ଶ୍ରଦ୍ଧା ବଢ଼ୁଚି । ଭବ ଭକ୍ତି ବଢ଼ୁଛି । ଖାଲି ଠାକୁର କାହିଁକି, ମଣିଷ ମଣିଷ ଭିତରେ ମଧ୍ୟ ।

ମଠଲି କହିଲା "ଜେଜେବାପା ! ତମେ ଯୋଉ ଫଗୁ ଆଣିଚ, ମୋ ସାଙ୍ଗ ରହମନ୍ ସେ ଫଗୁ ଆଣିଚି । ସେ ଆମର ସାଥିରେ କାଲି ଫଗୁ ଖେଳିବ । ହୋଲି ଖେଳିବ ସେ ।

ହଁ ସେ ନିଶ୍ଚୟ ଖେଳିବ । ତୁ ଦେଖୁନୁ ନାହିଁ, ଠାକୁର ବିମାନରେ ଆସିଲେ ଆଗ ତାଙ୍କ ସାଇବାଟେ ଭୋଗ ଖାଇ ଖାଇ ଆସନ୍ତି । ଠାକୁର ସମସ୍ତଙ୍କର । ହୋଲି ଖେଳ କାହାକୁ ଆନନ୍ଦ ନ ଦିଏ ।

ଆଚ୍ଛା ଜେଜେ ବାପା । ସେ ଫଗୁ ଗୁଡ଼ାକ କ'ଣ ?

"ମୁଁ ସେଇକଥା ଭାବୁଥିଲି । ଫଗୁ କଥାତ କାଇଁ କେହି ପଚାରୁ ନାହାନ୍ତି ? ଆଚ୍ଛା କଥାଟିଏ ପଚାରିଲୁ । ହଁ ଶୁଣ ! ଫଗୁକୁ ଅବିର ବୋଲି ଲୋକେ କହନ୍ତି । ଅବିର ଯାହା ଫଗୁ ତାହା । ତମେମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ ଅବିର ଆଳୁ ପାଳୁଅରୁ ତିଆରି ହୋଇଛି । ଆଳୁକୁ କାଟି ଚୁନା ଚୁନା କରି ତାକୁ ଶୁଖାଯାଏ । ତାକୁ ମେସିନ୍ ସାହାଯ୍ୟରେ ଚୂରି ପାଉଡର କରାଯାଏ । ପାଳୁଅ ମଧ୍ୟ ସେହିପରି ପାଉଡ଼ର ହୁଏ । ଏହି ପାଉଡ଼ର ଯେତେ ଶକ୍‌କଣ ହୁଏ ଫଗୁ ସେତେ ବଢ଼ିଆ ହୁଏ ।

ବକମ ବୋଲି ଗୋଟାଏ ପ୍ରକାର କାଠ ଅଛି । ତାକୁ ଲୋଧ ଟକାଲ କହନ୍ତି । ତାକୁ ପାଣିରେ ସିଝାଇ ଦେଲେ

ସେଥିରୁ ଗୋଟିଏ ରଙ୍ଗ ବାହାରେ । ଏହି ରଙ୍ଗ ବା କଷରେ ପାଲୁଅ କମ୍ବା ଆଲ୍ ପାଉଡ଼ରକୁ ମିଶାଇ ଦିଆଯାଏ । ତା ପରେ ତାକୁ ଖରାରେ ଶୁଖାଇ ଦିଆଯାଏ । ଶୁଖିବା ପରେ ଏହା ଫଗୁ ବା ଅବିର ହୋଇଯାଏ ।

ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଲିପି କହିଲା, "ତା ହେଲେ ଆମେ ତ ଅବିର ତିଆରି କରି ପାରିବା ଆମ ଘରେ ।

ଜେଜେ ବାପା କହିଲେ, "ହି ପାରିବା ଯେ, ବକମ କାଠକୁ ଆଣି ସେଥିରୁ କଷ ବାହାର କରିବା ଘରେ ସୁବିଧା ନୁହେଁ । ସେ କାଠ ମଧ୍ୟ ସବୁଠାରେ ମିଳିବନି ।

ମିଠିଲ କହିଲା, ହିଁ "ଜେଜେ ବାପା, ସେ କାଠ ମିଳୁଛି । ମୋ ସାଙ୍ଗର ବାପା ପରା ତାଙ୍କ ବାଡ଼ିରେ ସେ ଗଛ ଲଗାଇଚନ୍ତି । ସେ ତାଙ୍କ ଘରେ ଅବିର ତିଆରି କରୁଚନ୍ତି ।

ଲିସା; ଖତେଇ ହୋଇ କହିଲା, "ସବୁ କଥା ତ ତୋ ସାଙ୍ଗର ବାପା କରୁଛନ୍ତି । ତୁ ସତେ ଯମିତ ନିଜ ଆଖିରେ ଦେଖିଚୁ ।"

ମିଠିଲ ଅଭିମାନିଆ ସ୍ୱରରେ କହିଲା, "ନହେଲେ ନାହିଁ । ମୋ କଥା ସବୁ ମିଛ ଆଉ ତୋ କଥା ସବୁ ସତ ।"



# ପଶୁ ପକ୍ଷୀଙ୍କ କଥା

ବିଠୁ ଆଜି ଅଭିମାନ କରି ଶୋଇଛି । ଯେତେ ଯାହା କଲେବି ମାନଗୋବିନ୍ଦଙ୍କର ମାନ ଭଙ୍ଗୁନି । କାରଣ କଣକି, ଜେଜେମା ପରିବା କାଟୁଥିଲେ, ସେତିକିବେଳେ ସେ ଜିଦ୍ କଲା, ଗପଟାଏ କହିବାକୁ । ଗପ ପୁଣି ଇମିତି ନୁହେଁ । ପରୀ ରାଇଜର କାହାଣୀ ନୁହେଁ । ସେ ଶୁଣିବ ପକ୍ଷୀମାନଙ୍କ ଗପ । ଜେଜେମା କହିଲେ, ମୋ ଗପ ମୁଣିରେ ଖାଲି ପରୀ ରାଇଜର କାହାଣୀ ଅଛି । ଏତିକିରେ ସବୁ ସରିଗଲା । ମାନ କରି ବସିଲା ଘଣ୍ଟା ଘଣ୍ଟା ଧରି । ବସୁ ବସୁ ଶୋଇ ପଡ଼ିଲା ।

ଏଇତ ଉଠିଲାଣି । ଜେଜେ ବାପା ଜାଣିଲେ । ସେ ତାର ମାନ ଗୁମାନ ଭୁଲି ଯାଇଛି । ତଥାପି ତାକୁ କହିଲେ, ତୁ ଏତେ ସମୟ ଶୋଇ ପଡ଼ିଲୁ । ମୁଁ ପରା ଚାହିଁଛି, ତୁ ଆସିଲେ ଗପ କହିବି । ଆଜି ବଢ଼ିଆ ଗପଟାଏ ମୋ ମୁଣିରୁ ବାହାର କରିବି ।

"ଜେଜେ ବାପା ! ଜେଜେ ବାପା ! ଜେଜେମାଙ୍କ ମୁଣିରେ ବଢ଼ିଆ ଗପ ଆଉ ନାହିଁ । ସବୁ ପୁରୁଣା ହୋଇ ଗଲଣି ।"

ଆସି ପହଞ୍ଚିଗଲେ ନାତୁଣୀମାନେ । ଜେଜେ ବାପା ଗପ ଆରମ୍ଭ କଲେ । ଆଜି କହିବେ ପକ୍ଷୀମାନଙ୍କ ବିଷୟରେ ଗପ ।

"ବୁଝିଲ ପିଲାଏ । ତମେ ସବୁ ନନ୍ଦନ କାନନ ଯାଇଚ ?"

"ହଁ...ହଁ । ସେଠାରେ ଆମେ କେତେ ଜୀବଜନ୍ତୁ ଦେଖିଚୁ । ବାଘ, ହରିଣ, ସମ୍ବର, କୁଟୁରା । ନାନା ଜାତିର ପକ୍ଷୀ, ମାଙ୍କଡ଼, ବଣ ମଣିଷ । ଇମିତି କେତେ କ'ଣ ।"

ବାଘ କେଉଁଠାରେ ଥାଏ ?

ତାର ବାଡ଼ ଭିତରେ ଥାଆନ୍ତି ।

ମଣିଷ ଦେଖିଲେ ସେମାନେ କମିତି ହୁଅନ୍ତି ?

"ମୁହଁ ଶୁଖେଇ ଜାଲ ଭିତରେ ଥାଆନ୍ତି । ତାଙ୍କୁ ଖଟେଇ ଦେଲେ ବା କଣ କିଛି କହିଲେ ବଗଲା ବଗିଲା ମୁହଁରେ ଚାହାଁନ୍ତି ।"

ଠିକ୍ କଥା, ପଶୁ ଯାହା ପକ୍ଷୀ ତାହା । ସମସ୍ତେ ଚାହାନ୍ତି ସ୍ୱାଧୀନ ହୋଇ ବୁଲିବାକୁ । ତାଙ୍କୁ ବାନ୍ଧିଦେଲେ ତାଙ୍କର ମନର ସରସତା ନଷ୍ଟ ହୋଇଯାଏ । ସେମାନେ ମନ ଦୁଃଖରେ ମୁହଁ ଶୁଖେଇ ଚାହିଁ ଥାନ୍ତି ।

ତମେ ସବୁ ପକ୍ଷୀ ମାନଙ୍କୁ ଦେଖି ଥିବ । ସେମାନେ

ପଞ୍ଜୁରୀରେ ରହିଲେ ତାଙ୍କର ସବୁ ଆନନ୍ଦ ଉଭେଇଯାଏ । ଖୁସିବାସି ଆଉ ରହେ ନାହିଁ ।

ଜଙ୍ଗଲରେ ଥିବା ବାଘ ମାଙ୍କଡ଼ ଆଉ ଯେତେ ସବୁ ପଶୁ ଦୁଃଖରେ ମଉଳ ଯାଇଥାନ୍ତି । ପଶୁ ପକ୍ଷୀମାନଙ୍କୁ ଛାଡ଼ିଦେଲେ ସେମାନେ କେତେ ଆନନ୍ଦରେ ଖେଳାବୁଲା କରନ୍ତି । ସେତେବେଳେ ତାଙ୍କୁ ଦେଖିଲେ କି ଆନନ୍ଦ ଲାଗେ । ବନ୍ଧା ଜୀବଟିକୁ ଦେଖିବା ଯାହା, ଛବିଟାଏ ଦେଖିବା ସେଇଆ । ବରଂ ଛବିଟା ଦେଖିବାକୁ ବେଶି ଭଲଲାଗେ ।



ଲିପି କହିଲା, ସତରେ ଜେଜେବାପା । ମାଙ୍କଡ଼ଟିଏ ଗଛରେ ଡାଳମାଙ୍କିଡ଼ି ଖେଳିବାର ମଜା ଜଙ୍ଗଲ ଭିତରେ ନାହିଁ । ସେ ତାର ସବୁ ଖେଳ ଭୁଲିଯାଏ ।

ମିଠୁ କହିଲା, "ଜାଣିଚନା ଜେଜେ, କାଲି ବଗିଚାରେ ଅନେକ ଗୁଡ଼ାଏ ପକ୍ଷୀ ବସିଥିଲେ। ମିଠୁ ଛତାଟିଏ ଆଣି ଭୁସ୍ କରି ଖୋଲି ଦେଲା। ପକ୍ଷୀମାନେ ସବୁ ହୁରୁଡ଼ି ପଳାଇଲେ।

ଜେଜେ ବାପା ଲିନୀକୁ କୋଳରେ ଧରିଥାନ୍ତି। ସେ ନଆକରି କଥା କହି ଶିଖୁଥିଲା। ଖନେଇ ଖନେଇ କହିଲା, ଜେଜେ ! କେଲେ ସୁନ୍ଦଲ ଚଲେଇ। ମିଠୁନା ହରି ଦୁଷ୍ଟ।

ଜେଜେବାପା କହିଲେ ଏଇ ଦେଖ ! ତମେ ସବୁ ଚୁନ୍‌ଚାନ୍ ହୋଇ ବସ। ମୁଁ ସେମାନଙ୍କୁ ଡ଼ାକିବି। ସେମାନେ ପୁଣି ଆସିବେ। ଛତାଟା ମୋତେ ଦେ, ମୁଁ ଲୁଚେଇ ଦିଏ।

ତାପରେ ସେ ନାନା ପ୍ରକାର ଶବ୍ଦ କଲେ। ଉଡ଼ି ଯାଇଥିବା ପକ୍ଷୀମାନେ ଗଛ ଡ଼ାଳରୁ ପୁଣି ଓହ୍ଲାଇ ଆସିଲେ ତଳକୁ। ପାଖକୁ ଆସିବାକୁ ଡରିଲେ।

ଜେଜେବାପା କହିଲେ ତମେ ସବୁ ଯାଇ ଘର ଭିତରେ ଝରକା ପାଖରେ ବସ। ତମକୁ ପକ୍ଷୀମାନେ ଡରୁଛନ୍ତି। ମୁଁ ଏକା ଏ ବଗିଚାରେ ରହିବି। ପକ୍ଷୀମାନେ ଆସି ମୋ କାନ୍ଧରେ, ମୁଣ୍ଡରେ, ପିଠିରେ କୋଳରେ ବସିବେ। ମୋ ସାଥିରେ ଖାଇବେ। ତମେ ସବୁ ଘର ଭିତରୁ ଏ ସବୁ ଦେଖି ଖୁସି ହେବ।"

ସମସ୍ତେ ଘର ଭିତରକୁ ଚାଲିଆସି ଝରକା ପାଖରେ ଭିଡ଼ ଜମାଇଲେ। ଲିନୀ କହିଲା ଜେଜେୟା ! ମୁଁ ଯିବିନି, ତମ ପାଖରେ ରହିବି। ଚଲେଇଙ୍କ ସାଥିରେ

ଖେଳିବ ।" ଜେଜେ କହିଲେ ତୁ ଘରକୁ ଯା, ନହେଲେ ପକ୍ଷୀମାନେ ଆସିବେନି ।" ଲିନୀ ଚାଲିଗଲା ।

ଜେଜେ ବାପା ଗୋଟାଏ ମସିଣା ପକାଇଲେ ତଳେ ।

ଚା କପେ ମଗାଇଲେ । କିଛି ମୁଡ଼ି ଆଉ ରୁଟି ମଗାଇଲେ । ମୁଡ଼ି ମସିଣାରେ ପକାଇ ଦେଲେ । ରୋଟିକୁ ଛିଣ୍ଡାଇ ଟୁକୁଡ଼ା ଟୁକୁଡ଼ା କରିଦେଲେ । ସେ ଚାହା ଖାଉଥାନ୍ତି । ଖବର କାଗଜ ପଢୁଥାନ୍ତି । ପକ୍ଷୀମାନଙ୍କୁ ଇସାରା ଦେଲେ । ସେମାନେ ଗୋଟି ଗୋଟି ହୋଇ ଓହ୍ଲାଇ ଆସି ମସିଣାରେ ବସିଲେ । କିଏ ମୁଡ଼ି ଖୁମ୍ପି ଖାଇଲା । ଆଉ କିଏ ଜେଜେଙ୍କ ହାତରୁ ଟୁକୁଡ଼ା ରୁଟି ନେଇ ଖାଇଲା ।

ପିଲାଙ୍କ ଆନନ୍ଦ କହିଲେ ନ ସରେ । ପିଲାଏ ସମସ୍ତେ ପକ୍ଷୀ ସଉକିଆ ହୋଇଗଲେ । ପକ୍ଷୀମାନେ ଆଉ ପିଲାଙ୍କୁ ଭୟ କଲେ ନାହିଁ । ଜେଜେ କହିଲେ ପିଲାଏ ! ତମେ ସବୁ ପଶୁପକ୍ଷୀଙ୍କୁ ଭଲ ପାଇଲେ ସେମାନେ ଘର ଭିତରକୁ ଆସି ତମ ସାଥିରେ ଖେଳାବୁଲା କରିବେ । ତମର ନିତ ଦିନିଆ ସାଙ୍ଗ ସାଥି ହୋଇଯିବେ ।



# ଆକାଶ କାହିଁକି ନୀଳ
# ସୂର୍ଯ୍ୟ କାହିଁକି ଲାଲ

ଆଜି ଘରୁ ଗୋଟାଏ ପଟୁଆର ବାହାରିଛି । ଆଗରେ ଚାଲିଛନ୍ତି ଲିପି, ଲିପା, ବିଲୁ, ମିଠଲ ସୋମାନୀ ସୋମାନୀ ଆଉ ଲିନା । ପଛେ ପଛେ ଜେଜେବାପା ଚାଲିଛନ୍ତି । ନାତନାତୁଣୀଙ୍କ ପଟୁଆରରେ ସେ ମିଶିଛନ୍ତି । ସମସ୍ତେ ମୁହାଁଇଛନ୍ତି ନଈ ଆଡ଼କୁ ।

କିଛି ସମୟ ପରେ ସେମାନେ ପହଞ୍ଚିଗଲେ । ଅଙ୍କା-ବଙ୍କା ନଈଟା ସାପ ପରି ମାଡ଼ି ଚାଲିଛି ଆଗକୁ । ସୁଲୁ-ସୁଲିଆ ପବନ ବହୁଛି । ଆକାଶରେ ମାଛରଙ୍କା ଚକ୍କି କାଟୁଛି । ନଈଧାରର ବାଲି ଉପରେ ଧାଡ଼ି ହୋଇ ବସିଛନ୍ତି ଅନେକ ବଗ । ନଈ ବାଲିରେ ଚାଲି ଚାଲି ସମସ୍ତେ ସୁଅ ପାଖରେ ପହଞ୍ଚିଲେ । ବାଲି ଉପରେ ବସି ସେମାନେ ଚାରି ଆଡ଼କୁ ଚାହୁଁଥାନ୍ତି । ଜେଜେବାପା ବସିଥାନ୍ତି ମଝିରେ । ଚାରିପାଖରେ ପିଲାଏ ।

ବିଲୁ ହଠାତ ଚଲେଇ ଉଠିଲା । ଲିପି ନାନୀ... ଲିପି ନାନୀ । ହେଇ ଦେଖିଲ ଆକାଶଟା କେମିତି ଲାଲ ଦେଖାଯାଉଛି । ସବୁ ପିଲା ସେଇ ଆଡ଼କୁ ଚାହିଁଲେ ।

ସମସ୍ତେ ତାଳି ମାରି ମାରି କହିଲେ "ହୋଇରେ ଲାଲ—ଗୁଲାଲ ସୂର୍ଯ୍ୟ ଅସ୍ତ ହେଉଛନ୍ତି ।"

ରେମାନୀ କହିଲା "ଆକାଶଟା ମୋ ଫ୍ରକ ପରି ଲାଲ ଦେଖା ଯାଉଛି ।" ମିଠଲି କହିଲା "ମୋ ଫୁଟବଲ ପରି ସୂର୍ଯ୍ୟ ଦିଶୁଛି ।" ସୋମାନୀ କହିଲା "ମୋ ଟିକିଲି ଭଳିଆ ସୂର୍ଯ୍ୟ ଲାଲ ।" ଦଜ୍ଜୁ ସମସ୍ତଙ୍କ କଥାକୁ କାଟିଦେଇ କହିଲା "ଆକାଶ ଦେଖାଯାଉଛି ଆମ ହୋଲି ଖେଳର ଅବିର ପରି ।"

ଲିପି ପଚାରିଲା ଜେଜେବାପା ସୂର୍ଯ୍ୟ କେମିତି ଦେଖା ଯାଉଛନ୍ତି । ଜେଜେବାପା କହିଲେ "ତୁ କହୁନୁ ମୋତେ କଣ ପଚାରୁଛୁ ।

ଲିସା ଚଟ୍‌କରି କହିଲା ଜେଜେବାପା ମୁଁ କହିବି ?

"ହଁ କହୁନୁ ।"

ସୂର୍ଯ୍ୟ ଦେଖାଯାଉଛନ୍ତି ଗୋଟେ ସିନ୍ଦୁର ଟୋପା ପରି ।

ଲିପି ପଚାରିଲା ଜେଜେବାପା, ଆକାଶ ତ ନୀଳ, ଆଉ ସୂର୍ଯ୍ୟ କାହିଁକି ଲାଲ ? ବିଠୁ କହିଲା ଏଇପରି ଆକାଶଟା ଲାଲ ଦେଖାଯାଉଛି ତୁ ନୀଳ କ'ଣ କହୁଚୁ ।

ହଁ ଯେ, ସୂର୍ଯ୍ୟଙ୍କ ହସରେ ପଶ୍ଚିମ ଆକାଶ ସିନା ଲାଲ୍ ଦେଖାଯାଉଛି, ସାରା ଆକାଶଟା ତ ନୀଳ । ଜେଜେବାପା କହିଲେ ଆଚ୍ଛା ଶୁଣ ।

"ସତରେ ସୂର୍ଯ୍ୟ କେତେ ଲାଲ ଟୁହୁ ଟୁହୁ ପେଣ୍ଡୁଟିଏ ପରି ଜଣାପଡ଼ୁଛନ୍ତି । ସତେ ଯେମିତି କିଏ

ଆକାଶକୁ ଲିପି ଦେଇଛି ଙ୍ଗରେ । ପିଲାଏ, ମନେରଖ ସୂର୍ଯ୍ୟ ନିଜେ ଲାଲ୍ ହୋଇନାହାନ୍ତି । ସୂର୍ଯ୍ୟଙ୍କର କିଛି ବଦଳି ନାହିଁ । ଦିନର ସବୁ ସମୟରେ ଏ ପ୍ରକାରର ରଙ୍ଗ ଦେଖିବାକୁ ମିଳେନା । ସୂର୍ଯ୍ୟ ଅସ୍ତ ହେଲାବେଳେ ଏଇପରି ରଙ୍ଗ ଦେଖାଯାଏ ।"

ଏକା ସମୟରେ ସବୁ ଯାଗାରେ ସୂର୍ଯ୍ୟ ଅସ୍ତ ହୁଅନ୍ତି ନାହିଁ । ତେଣୁ ସବୁ ଯାଗାରେ ସୂର୍ଯ୍ୟ ଏକ ସମୟରେ ଲାଲ ଦେଖାଯାଆନ୍ତି ନାହିଁ । ତୁମେ ଜାଣିଛ, ସୂର୍ଯ୍ୟ ଆସ୍ତେ ଆସ୍ତେ ତଳକୁ ଖସନ୍ତି । ସେ ଯେତିକି ତଳୁଆ ହୁଅନ୍ତି ତାଙ୍କ କିରଣ ପୃଥିବୀର ବାୟୁମଣ୍ଡଳ ଭିତରେ ସେତିକି ଗତିକରେ । ଦୂରତା କମିଲେ ରଙ୍ଗ ବଢ଼େ । ଦୂରତା ବଢ଼ିଲେ ରଙ୍ଗ କମିଯାଏ ।

ଲିପି କହିଲା, "ଜେଜେବାପା ! ସୂର୍ଯ୍ୟଙ୍କ ଭିତରେ ପରା ସାତଟା ରଙ୍ଗ ଅଛି । ବାଘନିଶହଲାନା ।"

ଲିସା କହିଲା "ନାନା, ଆମ ଦିଦି କହିଛନ୍ତି, ବାଘ ନିଶଦିନାଲା ।" "ହଁ, ସେ ଏକା କଥା । ତୁମେ ନାଁ ଗୁଡ଼ାକ ଜାଣିଚ ତା ହେଲେ" ବାଇଗଣି, ଘନନୀଳ, ନୀଳ, ସବୁଜ, ହଳଦିଆ, ଲାଲ, ନାରଙ୍ଗୀ । ଏସବୁ ରଙ୍ଗ ମିଶି ସୂର୍ଯ୍ୟ ଇଷତ୍ ଧଳା ଦେଖାଯାନ୍ତି ।

ପୃଥିବୀର ବାୟୁମଣ୍ଡଳରେ ଧୂଳିକଣା, ଜଳକଣା ଓ ଆଉ ଅନେକ ମଇଳା ଜିନିଷ ଅଣୁ ଆକାରରେ ରହିଛି । ସୂର୍ଯ୍ୟ ଯେତିକି ତଳକୁ ଆସନ୍ତି, ତାଙ୍କ କିରଣ ସେତିକି ଏଇସବୁ ଭିତରେ ଦେଇ ଆସେ । ଫଳରେ ତା

ଭିତରୁ ନାନାରଙ୍ଗ ବାହାରେ । ସାଧାରଣତଃ ଆମ ବାୟୁ-
ମଣ୍ଡଳରୁ ବାଇଗଣି, ନୀଳ ଆଉ ସବୁଜ ରଙ୍ଗ ବାହାରଆଏ ।
ଯେତେବେଳେ ସୂର୍ଯ୍ୟ ଅସ୍ତ ହୋଇ ଯାଆନ୍ତି । ସେତେ
ବେଳେ ଅତ ତଳକୁ ଆସିଯାଆନ୍ତି । ସେ ଯେତକ ତଳକୁ
ଆସନ୍ତି, ଲାଲ୍ ଆଉ ହଳଦିଆ ରଙ୍ଗ ସେତକ ବାହାରେ ।
ଫଳରେ ସୂର୍ଯ୍ୟ ଅସ୍ତ ବେଳେ ଲାଲ ଦେଖାଯାଏ । ଲାଲ
କିରଣ ପଡ଼ି ପଶ୍ଚିମ ଆକାଶ ଲାଲ ହୋଇଯାଏ ।

ମିଠଲ କହିଲା, "ଏମିତ କଥା । ସୂର୍ଯ୍ୟ ନିଜେ ଲାଲ
ହୁଅନ୍ତିନ । ବାୟୁମଣ୍ଡଳର ଧୂଳି ଓ ଜଳକଣା ଭିତରେ
ଆଲୋକ ପଶିଲେ ରଙ୍ଗଟା ବାହାରେ । ଆଚ୍ଛା ଜେଜେ-
ବାପା ! ଆକାଶଟା ନୀଳ କାହିଁକି ?"

"ଆଚ୍ଛା ତମେତ ସବୁ କହୁଥିଲ, ସୂର୍ଯ୍ୟଙ୍କର ସାତଟା
ରଙ୍ଗ ଅଛି ବୋଲି । ତାହା ସୂର୍ଯ୍ୟଙ୍କଠାରୁ ବାହାରି
ବାୟୁମଣ୍ଡଳରେ ଖେଳିଯାଏ । ବାଇଗଣି ଆଉ ନୀଳ
ରଙ୍ଗର ତରଙ୍ଗ ସବୁ ଛୋଟ ଛୋଟ । ଏହା ବାୟୁରେ
ଚାରିଆଡ଼େ ବିଛେଇ ହୋଇଯାଏ । ଲାଲ ରଙ୍ଗଟା ସିଧା
ବାୟୁମଣ୍ଡଳ ଭେଦକରି ଚାଲିଆସିପାରେ । ନୀଳ ଆଉ
ବାଇଗଣି ରଙ୍ଗ ବାୟୁମଣ୍ଡଳ ଭେଦକରି ତଳକୁ ଆସି-
ପାରେ ନାହିଁ । ଶୂନ୍ୟରେ ଏହା ବିଛେଇ ହୋଇ ରହିଯାଏ ।
ଆମେ ଆକାଶକୁ ଚାହିଁଲେ ଆକାଶ ଏଥିପାଇଁ ନୀଳ
ଦେଖାଯାଏ ।

ସବୁ ଶୁଣି ଶୁଣି ମିଠଲ ଉଠି ପଡ଼ିଲା । ବାଲି ଝାଡ଼ି
ଝାଡ଼ି କହିଲା, ଜେଜେବାପା ତମେ କିଛି ଜାଣିନ ।

ଜେଜେମା କହୁଥିଲେ, "ପରସ୍ତ୍ରଣୀ ତାଙ୍କର ରଙ୍ଗ ତୂଳୀ ନେଇ ଆକାଶକୁ ନୀଳ ରଙ୍ଗରେ ରଙ୍ଗେଇଛନ୍ତି । ସୂର୍ଯ୍ୟ ବୁଡ଼ିବା ଆଗରୁ ସେ ପଶ୍ଚିମ ଦିଗରେ ରଙ୍ଗ ତୂଳୀ ଧରି ଛିଡ଼ା ହୋଇଥାନ୍ତି । ସୂର୍ଯ୍ୟ ନଇଁ ଆସିଲେ ସେ ରଙ୍ଗେଇ ଦିଅନ୍ତି ।"

ଶ୍ରୀମାନୀ, ସୋମାନୀ, ଲିନୀ, ଲିସା ଏକାବେଳେ କହି ଉଠିଲେ ଜେଜେମାଙ୍କ କଥାଟା ଠିକ୍ ହୋଇଥିବ । ଲିପି କହିଲା, "ଆମ ବହିରେ ବି ଲେଖା ଅଛି । ଜେଜେ-ବାପା ଯାହା କହିଲେ ତାହା ଠିକ୍ ।"

